ଓଡ଼ିଶା ମାଧ୍ୟମିକ ଶିକ୍ଷା ବୋର୍ଡ଼ଙ୍କ ଦ୍ୱାରା ମଞ୍ଜୁର ପ୍ରାପ୍ତ

# ନାଗରିକ ନୀତି

## ପ୍ରଥମ ଭାଗ

( ଷଷ୍ଠ ଶ୍ରେଣୀ ନିମନ୍ତେ )

ଲେଖକ—

ଶ୍ରୀ ଅଧିରାଜ ମୋହନ ସେନାପତି, ବି.ଏ., ଏଲ୍.ଟି, ବି.ଇଡ୍.

ପରିମାର୍ଜିତ ସଂସ୍କରଣ

୧୯୫୯

ପ୍ରକାଶକ—

ଶ୍ରୀ ସତ୍ୟନାରାୟଣ ମିଶ୍ର

ପ୍ରୋପ୍ରାଇଟର

ଓଡ଼ିଶା ପବ୍ଲିଶିଂ ହାଉସ୍

କଟକ—୨

ମୂଲ୍ୟ—ନଅ ଅଣା

ବା ୫୬ ନୟାପଇସା

# ପିଲାଙ୍କୁ ଦି’ପଦ—

ଆଚ୍ଛା, ପିଲାଏ ! ତୁମେସବୁ ପାଠ ପଢୁଛ କାହିଁକି ? ଶ୍ୟାମସୁନ୍ଦର ଝଟ୍ ଉଠିପଡ଼ି ଉତ୍ତର ଦେଲା, ‘‘ଚାକିରି କରି ଟଙ୍କା ରୋଜଗାର କରିବା ପାଇଁ ।’’ ନବଘନ କହିଲା, ‘‘ନା ନା, ତା’ ନୁହେଁ । ଦେଶବିଦେଶ କଥା, ଅନ୍ୟାନ୍ୟ ଅନେକ କଥା ଜାଣିବା ପାଇଁ ।’’ ଦାଶରଥି କହିଲା, ‘‘ଜ୍ଞାନ ଅର୍ଜନ କରିବା ପାଇଁ ।’’ ନରହରି ଉତ୍ତର ଦେଲା, ‘‘ପରୀକ୍ଷାରେ ପାଶ୍ କରିବା ପାଇଁ ।’’ ଏହିପରି କିଏ କେତେ ରକମ ଉତ୍ତର ଦେଲେ । ଶେଷକୁ ଥିଲା ଯୁଧିଷ୍ଠିର । ସେ ଶିବଚନ୍ଦ୍ର କହିଲା, ‘‘ଭଲଭାବରେ ଜୀବନ ଯାପନ କରିବା ପାଇଁ ଆମେ ପାଠ ପଢୁଛୁ ।’’ ବେଶ୍ ଏଇ ଶେଷ ଉତ୍ତରଟି ଠିକ୍ ଉତ୍ତର ହେଲା । ତୁମେ ସବୁ ଛଅ ବର୍ଷ ହେଲା ପାଠ ପଢି ଷଷ୍ଠ ଶ୍ରେଣୀରେ ପହଞ୍ଚିଲଣି । ତୁମମାନଙ୍କର ବୟସ ହେଲାଣି ଏଗାର, ବାର, ତେର । କଳିକାଳରେ ମଣିଷର ପରମାୟୁ ମୋଟେ ଷାଠିଏ ବର୍ଷ । କହନ୍ତି ପରା—‘‘କଳିଷାଠି’’ । ତୁମ ଜୀବନକାଳର ପାଞ୍ଚଭାଗରୁ ଭାଗେ ଭୋଗ ହେଲାଣି, ପାଠ ପଢ଼ି ଅନେକ କଥା ଶିଖିଲଣି, ଜାଣିଲଣି । ସ୍କୁଲରେ ପଢୁଛ—ସାହିତ୍ୟ, ଗଣିତ, ଇତିହାସ, ଭୂଗୋଳ, ସାଧାରଣ ଜ୍ଞାନ ଇତ୍ୟାଦି । ଏସବୁ ବିଷୟ ପଢ଼ି ଅନେକ କଥା ଶିଖୁଛ ସତ, କିନ୍ତୁ ଶିକ୍ଷାର ଯେଉଁ ଲକ୍ଷ୍ୟ ଭଲଭାବରେ ଜୀବନ ଯାପନ କରିବା, ସେ ଲକ୍ଷ୍ୟ ଲାଭ କରିବା ପାଇଁ ଏସବୁ ବିଷୟ ବେଶି ସାହାଯ୍ୟ କରୁ ନାହିଁ । ଭଲଭାବରେ ଜୀବନ ଯାପନ କରିବାକୁ ହେଲେ ତୁମକୁ ଭଲ ନାଗରିକ ହେବା ପାଇଁ ଶିଖିବାକୁ ହେବ । ଭଲ ନାଗରିକ ହେବା ପାଇଁ ନାଗରିକ ନୀତିମାନ ଭଲରୂପେ ଜାଣିବାକୁ ହେବ । ତୁମ୍ଭେମାନେ ନାଗରିକ ନୀତି ଜାଣି ଭଲ ନାଗରିକ ହେବ—ଏହି

ଉଦ୍ଦେଶ୍ୟରେ ଏହି "ନାଗରିକ ମିତ୍ର" ପୁସ୍ତକ ତୁମ୍ଭମାନଙ୍କ ସକାଶେ ଲେଖା ହେଲା । ଲେଖକଙ୍କର ଆଶା ଓ ବିଶ୍ୱାସ ଯେ ପୁସ୍ତକ ପାଠ କରି ତୁମ୍ଭେମାନେ ଉତ୍ତମ ନାଗରିକ ହେବ, ଉତ୍ତମରୂପେ ଜୀବନ-ଯାତ୍ରା ନିର୍ବାହ କରିବ, ସୁନାମ ଅର୍ଜିବ ଓ ପ୍ରଶଂସାର ପାତ୍ର ହେବ ।

ନାଗରିକ ଜ୍ଞାନର ଅଭାବ ଆମ ଦେଶରେ ସବୁଠାରେ ଦେଖାଯାଉଛି । ରାସ୍ତାରେ ଗଲାବେଳେ କିଏ ପଚ୍ ପଚ୍ କରି ଛେପ ପକାଇ ଦେଉଛି । ଲୋକଗହଳରେ କିଏ କାହାକୁ ଠେଲି ପେଲି ଆଗେଇ ଯାଉଛି । ଯାହାର ଯେ ଅଧିକାର ସେ ତାହା ବୁଝୁନାହିଁ । ଅନ୍ୟର ଅଧିକାର ଓ ଦାବୀକୁ ଉପେକ୍ଷା କରୁଛି । ଏ ସବୁ ଘଟୁଛି କାହିଁକି ? ଉତ୍ତର—ନାଗରିକ ଜ୍ଞାନର ଅଭାବ ଯୋଗୁଁ । ଏ ଅଭାବ ଦୂର ନ ହେଲେ ଆମେ ଆଧୁନିକ ସଭ୍ୟ ଓ ଉନ୍ନତ ଜଗତର ଅନ୍ୟ ଅଧିବାସୀଙ୍କ ସମକକ୍ଷ ହୋଇ ପାରିବୁ ନାହିଁ । ଆଜିକାଲି ଦେଶସାରା ଭାଇ ଭାଇ ମଧ୍ୟରେ ଯେଉଁ ବାଦ ବିବାଦ ଲାଗୁଛି, ତାହା ମୂଳରେ ସେହି ନାଗରିକ ଜ୍ଞାନର ଅଭାବ । ଆମେ ସମସ୍ତେ ପରସ୍ପର ମଧ୍ୟରେ ସ୍ନେହଭାବ ପୋଷଣ କରି କାନ୍ଧକୁ କାନ୍ଧ ମିଳାଇ, ହାତ ଧରାଧରି ହୋଇ ଭାଇ ଭାଇ ପରି ବାସ କରି ପାରିଲେ ସବୁ କଳିଗୋଳ, ବାଦ ବିବାଦ ତୁଟିଯିବ । ଏଥିପାଇଁ ଦରକାର ନାଗରିକ ଜ୍ଞାନ ।

କଟକ
ତା ୧୦-୧୨-୧୯୫୭

ଲେଖକ
ଶ୍ରୀ ଅଧିରାଜ ମୋହନ ସେନାପତି

# ସୂଚୀ

ବିଷୟ ପୃଷ୍ଠା



---

# ପ୍ରଥମ ଅଧ୍ୟାୟ

## ଆଗ କହିବା କଥା

ତୁମ ଘରେ ତୁମେ, ବାପା, ମା, ଭାଇ, ଭଉଣୀ ଏକାଠି ବାସ କର । ତୁମ ବାପା ମା ତୁମକୁ ଭଲ ପାଆନ୍ତି, ସ୍ନେହ ଆଦର କରନ୍ତି । ତୁମେ ବାପା ମା'ଙ୍କୁ ଓ ଅନ୍ୟ ଗୁରୁଜନଙ୍କୁ ଭକ୍ତି ଏବଂ ସମ୍ମାନ କର । ଘରକାମରେ ଜଣକୁ ଜଣେ ସାହାଯ୍ୟ କରେ । ପର୍ବପର୍ବାଣିରେ ଘରର ସମସ୍ତେ ଆନନ୍ଦ ଭୋଗ କରନ୍ତି । ଦୁଃଖ ବିପଦ ପଡ଼ିଲେ, ରୋଗ ବୈରାଗ ହେଲେ କାହାର ମନରେ ଶାନ୍ତି ନ ଥାଏ । କଷ୍ଟରୁ ରକ୍ଷା ପାଇବା ପାଇଁ ସମସ୍ତେ ମିଳିମିଶି ଲାଗିପଡ଼ନ୍ତି । ତୁମ ନିଜ ଘର କଥା ଏହିପରି । ତୁମ ନିଜ ଘରେ ଯେତେ ପ୍ରାଣୀ କୁଟୁମ୍ବ ରହନ୍ତି, ସମସ୍ତଙ୍କୁ ମିଶାଇଲେ ଗୋଟିଏ ପରିବାର ହୁଏ । ତୁମ ପରିବାର ମଧ୍ୟରେ ଜଣକର ଅନ୍ୟ ପ୍ରତି କିଛି ନା କିଛି କର୍ତ୍ତବ୍ୟ ଅଛି ।

ତୁମ ଗାଁ କଥା ମଧ୍ୟ ଠିକ୍ ସେହିପରି । ଗାଁରେ ଭିନ୍ନ ଭିନ୍ନ ଜାତିର ଲୋକ ବାସ କରନ୍ତି । ସମସ୍ତେ ସମସ୍ତଙ୍କୁ ସାହାଯ୍ୟ କରନ୍ତି । ଚାଷୀ ଚାଷ କରି ଧାନ, ମୁଗ, ବିରି, କୋଳଥ ପ୍ରଭୃତି କେତେ ରକମ ଶସ୍ୟ ଉତ୍ପାଦନ କରେ । ଚାଷୀ ସମସ୍ତଙ୍କୁ ଖାଦ୍ୟ ଯୋଗାଏ । ଚାଷୀକୁ ସାହାଯ୍ୟ କରିବା ପାଇଁ କମାର ଲଙ୍ଗଳ ଫାଳ ତିଆରି କରେ । ବଢ଼େଇ ଲଙ୍ଗଳ ତିଆରି କରେ । ଗାଁରେ ଚଳିବା ପାଇଁ ଆଉ କେତେ ଲୋକ ପରସ୍ପରକୁ ସାହାଯ୍ୟ କରନ୍ତି । ତନ୍ତୀ ଲୁଗା ବୁଣେ, ତେଲି ତେଲ ପେଡ଼େ, ଗୁଡ଼ିଆ ମିଠେଇ ଉଖୁଡ଼ା ତିଆରି କରେ, ଗଉଡ଼ ଦୁଧ ଯୋଗାଏ, ଧୋବା ଲୁଗା କାଚେ, ବାରିକ କ୍ଷିଅର କରେ । ଏତେ ଲୋକଙ୍କ ସାହାଯ୍ୟ ନ ପାଇଲେ ତୁମେ ଗାଁରେ ଚଳି ପାରନ୍ତ କି ? ଏ ସମସ୍ତଙ୍କ ପ୍ରତି ତୁମର କର୍ତ୍ତବ୍ୟ ଅଛି । ତୁମ ସାଇପଡ଼ିଶାର ଲୋକଙ୍କ ପ୍ରତି କର୍ତ୍ତବ୍ୟ ଅଛି । ତୁମ ସାଇ-ପଡ଼ିଶା ତୁମର ସାହା ଭରସା । କାହାର ବିପଦ ଆପଦ ପଡ଼ିଲେ ତୁମେ ତାହାକୁ ସାହାଯ୍ୟ କର । ତୁମର ବିପଦ ଆପଦ ପଡ଼ିଲେ ସେ ତୁମକୁ ସାହାଯ୍ୟ କରେ ।

ଏ ତ ଗଲା ତୁମ ଘର କଥା, ତୁମ ସାଇପଡ଼ିଶାଙ୍କ କଥା, ତୁମ ଗାଁ କଥା । ଆଜିକାଲିର ସଭ୍ୟ ଜଗତରେ ଭଲଭାବରେ ଜୀବନ ଯାପନ କରିବାକୁ ହେଲେ ଆମକୁ ଆହୁରି ଅନେକ କଥା ଜାଣିବାକୁ ହେବ । ଆମ ଜିଲ୍ଲା କଥା, ଜିଲ୍ଲାର ପ୍ରଧାନ ସହର କଥା, ଆମ ପ୍ରଦେଶ କଥା, ଆମ ଦେଶ କଥା, ବିଦେଶ କଥା, ଏପରି କି ସାରା ଦୁନିଆ କଥା ଜାଣିବା ଦରକାର । ପ୍ରତ୍ୟେକ ମନୁଷ୍ୟର ମନୁଷ୍ୟସମାଜ ସହିତ ସମ୍ପର୍କ ଅଛି । ତୁମେ ଗ୍ରାମବାସୀ ବା ନଗରବାସୀ, ଜିଲ୍ଲାବାସୀ, ପ୍ରଦେଶବାସୀ, ଦେଶବାସୀ ଓ ପୃଥିବୀର

ଅଧିବାସୀ—ଏତେ ଲୋକଙ୍କ ଗହଳରେ ତୁମକୁ ବାସ କରିବାକୁ ହେଉଛି ।

ବଡ଼ ହେଲେ ତୁମ ଭିତରୁ କେହି ଗାଁରେ ରହି ଗୃହବାସ କରିବ, କେହି ସହରରେ ରହି ଚାକିରି କରିବ, କେହି ବ୍ୟବସାୟ ବାଣିଜ୍ୟ କରିବ, କେହି ହୁଏତ ଦେଶ ସେବା କରିବା ପାଇଁ ବାହାରି ପଡ଼ିବ । ତୁମେ ଜଣେ ନାଗରିକ । ତୁମେ ଯେଉଁ କାମ କର ବା ଯେଉଁଠି ରହ, ନାଗରିକ ଭାବରେ ତୁମର ଅଧିକାର କଅଣ ଓ କର୍ତ୍ତବ୍ୟ କଅଣ, ତାହା ଭଲରୂପେ ଜାଣିବାକୁ ହେବ । ଦେଶ ଶାସନରେ ତୁମର କି ଅଧିକାର ଅଛି, ତୁମର ଦାୟିତ୍ୱ କଅଣ, ଦେଶବାସୀଙ୍କ ପ୍ରତି ତୁମର କର୍ତ୍ତବ୍ୟ କଅଣ—ଏ ସବୁ କଥା ତୁମର ଜାଣିବା ଉଚିତ ।

ପ୍ରତ୍ୟେକ ନାଗରିକର କେତେଗୁଡ଼ିଏ ଅଧିକାର ଅଛି; ଯଥା – ଭୋଟ ଦେବା, ସଭାସମିତିରେ ନିଜର ମତ ପ୍ରକାଶକରିବା, ଖବରକାଗଜରେ ଲେଖିବା ବା ବହି ଲେଖିବା, ନିଜର ଆପତ୍ତି ଅଭିଯୋଗ ସରକାରଙ୍କୁ ଜଣାଇବା ଇତ୍ୟାଦି । ପ୍ରତ୍ୟେକ ନାଗରିକର ସମାଜ ପ୍ରତି ଓ ସରକାରଙ୍କ ପ୍ରତି କେତେକ କର୍ତ୍ତବ୍ୟ ଅଛି; ଯଥା- ପ୍ରତ୍ୟେକକୁ ତାର ନ୍ୟାଯ୍ୟ ଅଧିକାର ଦେବା, ରାସ୍ତାରେ ଯିବାର ନିୟମ ମାନି ରାସ୍ତାରେ ଚାଲିବା, ସରକାରଙ୍କ ଆଇନ ମାନି ଚଳିବା, ଲୋକମାନଙ୍କ ସହିତ ସହଯୋଗ କରିବା, ଭଦ୍ର ଓ ଶିଷ୍ଟ ବ୍ୟବହାର କରିବା ଏବଂ ଅନ୍ୟକୁ ସାହାଯ୍ୟ କରିବା । ଏହା ଛଡ଼ା ଅନୁନ୍ନତ ଲୋକଙ୍କ ପ୍ରତି ପ୍ରତ୍ୟେକ ନାଗରିକର ଯଥେଷ୍ଟ କର୍ତ୍ତବ୍ୟ ରହିଅଛି । ନାଗରିକର ନୀତି ବା ନିୟମମାନ ଜାଣିଲେ ତୁମେ ନିଜକୁ ଆଦର୍ଶ ନାଗରିକ ରୂପେ ଗଢ଼ି ପାରିବ । "ନାଗରିକ ନୀତି" ପୁସ୍ତକରେ ତୁମ୍ଭେମାନେ ଉତ୍ତମ ନାଗରିକ ହେବାର କେତେକ ସହଜ ନିୟମ

ବା ମାନ୍ତ ଜାଣିବ । କେବଳ ଜାଣିଲେ ହେବ ନାହିଁ, ନିୟମଗୁଡ଼ିକ ଜାଣି ସେହି ଅନୁସାରେ କାମ କରିବାକୁ ହେବ । ତେବେ ତୁମ୍ଭେ-ମାନେ ଜଣେ ଜଣେ ଆଦର୍ଶ ନାଗରିକ ହୋଇ ପାରିବ ।

## ପ୍ରଶ୍ନ

୧ । 'ନାଗରିକ' ଶବ୍ଦର ଅର୍ଥ ଭଲରୂପେ ବୁଝାଇଦିଅ ।

୨ । ନାଗରିକର କି କି ଅଧିକାର ଅଛି ?

୩ । ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ କଅଣ ?

୪ । ଏହି ପୁସ୍ତକର ନାମ 'ନାଗରିକ ମାନ୍ତ' କାହିଁକି ରଖା ଯାଇଅଛି ?

---

# ଦ୍ୱିତୀୟ ଅଧ୍ୟାୟ

## ଡାକ ଓ ତାର ବିଭାଗ

**ଭାରତର ଡ଼ାକ ବିଭାଗର ସୃଷ୍ଟି ଓ ସୁବିଧା**—ପ୍ରଥମ ଆମଳରେ ଆମ ଦେଶରେ ଡ଼ାକବିଭାଗ ନ ଥିଲା । ସେତେବେଳେ ବିଦେଶରୁ କାହାରି ପାଖରୁ ଖବର ଅନ୍ତର ପାଇବା ବଡ଼ କଷ୍ଟକର ଥିଲା । ଲୋକମାନେ ପାଦରେ ଚାଲି ଚାଲି ଏକ ଜାଗାରୁ ଅନ୍ୟ ଜାଗାକୁ ଖବର ନେଇ ଯାଉଥିଲେ । ଏଥିରେ ବହୁତ ବିଳମ୍ବ ଘଟୁଥିଲା, ବହୁତ ଖରଚ ମଧ୍ୟ ହେଉଥିଲା । ତାହାପରେ ଘୋଡ଼ାମାନଙ୍କ ସାହାଯ୍ୟରେ ଖବର ପଠାଇବାର ବ୍ୟବସ୍ଥା ହେଲା । ଏହା ମଧ୍ୟ ବିଶେଷ ସୁବିଧାଜନକ ହେଲା ନାହିଁ । ପ୍ରାୟ ଶହେ ବର୍ଷ ପୂର୍ବେ ଇଂରେଜମାନଙ୍କ ରାଜତ୍ୱ କାଳରେ ଭାରତରେ ଡ଼ାକ

ବିଭାଗ ସ୍ଥାପିତ ହେଲା । ସେହିଦିନଠାରୁ ଏହି ବିଭାଗର କ୍ରମେ କ୍ରମେ ଉନ୍ନତି ହୋଇଅଛି । ଡାକ ବିଭାଗ ସାହାଯ୍ୟରେ ଆମ୍ଭେମାନେ ଅଳ୍ପ ଖରଚରେ ଭାରତର ଯେ କୌଣସି ଅଂଶକୁ ଚିଠିପତ୍ର ପଠାଇ ପାରୁଛୁଁ । ବିନେ ଦୁଇଦିନରେ ଚିଠି ଠିକଣା ସ୍ଥାନରେ ପହଞ୍ଚିଯାଉଛି, ଖୁବ୍ ଦୂରବର୍ତ୍ତୀ ଜାଗାରେ ପହଞ୍ଚିବାକୁ ଚାରି ଦିନରୁ ଅଧିକ ଲାଗୁ ନାହିଁ । ମଫସଲର ଗାଁମାନଙ୍କରେ ମଧ୍ୟ ଚିଠି ପାଇବାର ସୁବିଧା ହୋଇଅଛି । ଡାକ ବିଭାଗ ଦ୍ୱାରା ଆମର ଆଉ କେତେ ପ୍ରକାର ସୁବିଧା ହୋଇଅଛି । ମନିଅର୍ଡ଼ର (Money Order) କରି ଟଙ୍କା ପଠାଇବା, ଜିନିଷ ପାର୍ସେଲ (Parcel)କରି ପଠାଇବା, ଡାକଘରେ ଟଙ୍କା ଜମା ରଖିବା—ଏସବୁ ମଧ୍ୟ ଡାକ ବିଭାଗର କାମ । ଭାରତରେ ଯେପରି ଡାକ ବିଭାଗ ଅଛି, ଆଉ ସବୁ ଦେଶରେ ମଧ୍ୟ ସେହିପରି ଡାକବିଭାଗ ଅଛି । ଏହି ସୁବିଧା ଯୋଗୁଁ ପୃଥିବୀର ଯେ କୌଣସି ଦେଶକୁ ଚିଠିପତ୍ର, ଟଙ୍କା ଓ ଜିନିସ ପାର୍ସେଲ କରି ପଠାଇବା ସମ୍ଭବ ହୋଇଅଛି । ଆଜିକାଲି ଭାରତ, ଇଂଲଣ୍ଡ, ଆମେରିକା ଓ ଅନ୍ୟାନ୍ୟ ଦୂର ଦେଶମାନଙ୍କ ମଧ୍ୟରେ ଉଡ଼ାଜାହାଜରେ ଡାକ ନେବା ଆଣିବା ସୁବିଧା ହେଲାଣି ।

**ଡାକଘର**—ସହରରେ କଚେରୀ, ସ୍କୁଲ, କଲେଜ, ଡାକ୍ତରଖାନା ପ୍ରଭୃତି ଥାଏ ଏବଂ ବଡ଼ ବଡ଼ ଦୋକାନୀ ଓ ବ୍ୟବସାୟୀମାନେ ରହନ୍ତି । ମଫସଲରୁ ଓ ଭିନ୍ନ ଭିନ୍ନ ସ୍ଥାନରୁ ବହୁତ ଲୋକ କାମଧନ୍ଦାରେ ଆସି ସହରରେ ରହନ୍ତି । ତେଣୁ ସହରରେ ଚିଠିପତ୍ର, ପାର୍ସେଲ ଓ ଟଙ୍କା କାରବାର ବେଶି । ସେଥିପାଇଁ ସହରରେ ଅଧିକ ଡାକଘର ଥାଏ । କଟକ ସହରରେ ଅନେକଗୁଡ଼ିଏ ଡାକଘର ଅଛି । ଏହା ଭିତରୁ ଗୋଟିଏ ବଡ଼

ଡାକଘର ( General Post Office ) । ଅନ୍ୟାନ୍ୟ ସହରରେ ଏହିପରି ଗୋଟିଏ ଗୋଟିଏ ବଡ଼ ଡାକଘର ଅଛି । ବଡ଼ ଡାକଘର ଅଧୀନରେ ସବ୍ ପୋଷ୍ଟ ଅଫିସ ଓ ବ୍ରାଞ୍ଚ ପୋଷ୍ଟ ଅଫିସମାନ ଅଛି । ପ୍ରତି ଗାଁରେ ଡାକଘର ନାହିଁ । ଲୋକସଂଖ୍ୟା ଏବଂ ଚିଠିପତ୍ର ଓ ଟଙ୍କା ପଇସାର କାରବାର ଅନୁସାରେ କେତେଗୁଡ଼ିଏ ଗାଁ ପାଇଁ ଗୋଟାଏ ଡାକଘର ଅଛି । ପ୍ରତି ଡାକଘରେ ଜଣେ ପୋଷ୍ଟମାଷ୍ଟର ଥାଆନ୍ତି ; ସେ ଡାକଘରର ପ୍ରଧାନ ପରିଚାଳକ । ବଡ଼ ଡାକଘରମାନଙ୍କରେ ପୋଷ୍ଟମାଷ୍ଟରଙ୍କ ତଳକୁ କେତେଜଣ କିରାଣି ଥାଆନ୍ତି । ଏମାନେ ଡାକଘରର ଗୋଟିଏ ଗୋଟିଏ ବିଭାଗରେ କାମ କରନ୍ତି । ସହରର ବଡ଼ ଡାକଘରକୁ ଗଲେ ଦେଖିବ—ଗୋଟାଏ ଝରକା ଉପରେ ପଟାରେ ଲେଖା ହୋଇଛି 'ମନିଅର୍ଡ଼ର' । ସେଠାରେ ଜଣେ କିରାଣି ବସିଥାଆନ୍ତି । ସେ ଟଙ୍କା ପଇସା ମନିଅର୍ଡ଼ର କରି ପଠାଇବାର ସବୁ କାମ କରନ୍ତି । ଆଉ ଗୋଟିଏ ଝରକା ଉପରେ ଦେଖିବ—'ସେଭିଙ୍ଗସ୍ ବ୍ୟାଙ୍କ୍' ( Savings Bank ) । ଏଠାରେ ଜଣେ କିରାଣି ଥାଆନ୍ତି । ସେ ଡାକଘରେ ଟଙ୍କା ଜମା ଦେବାର ଓ ଡାକଘରୁ ଟଙ୍କା ଉଠାଇ ଆଣିବାର ସବୁ କାମ କରନ୍ତି । ଆଉ ଗୋଟିଏ ଝରକା ପାଖକୁ ଗଲେ ଦେଖିବ—'ପାର୍ସେଲ' (Parcel)ଲେଖା ହୋଇଛି । ସେଠାରେ ଜିନିଷପତ୍ରର ପାର୍ସେଲ ସବୁ ଦିଆନିଆ ହୁଏ । ଆଉ ଗୋଟିଏ ଝରକା ପାଖକୁ ଗଲେ ଦେଖିବ—"ରେଜିଷ୍ଟ୍ରି" । ଏଠାରେ ଚିଠିପତ୍ର, ପାର୍ସେଲ ପ୍ରଭୃତି ରେଜିଷ୍ଟ୍ରି କରାହୁଏ । ଆଉ ଗୋଟିଏ ଝରକା ଉପରକୁ ଲେଖା ହୋଇଛି—"ଡାକଟିକଟ" (Stamps) । ସେଠାରେ ପୋଷ୍ଟକାର୍ଡ଼, ଲଫାପା ଓ ସବୁ ରକମର ଡାକଟିକଟ ବିକ୍ରୀ ହୁଏ । ସବ୍ ପୋଷ୍ଟ ଅଫିସରେ ଏତେ ଗୁଡ଼ିଏ

ଅଲଗା ବିଭାଗ ନ ଥାଏ । ପୋଷ୍ଟମାଷ୍ଟରଙ୍କ ତଳକୁ ଜଣେ ଦୁଇଜଣ କିରାଣୀ ଥାଆନ୍ତି । ବ୍ରାଞ୍ଚ ପୋଷ୍ଟ ଅଫିସରେ କମ୍ କାମ, ତେଣୁ ଜଣେ ପୋଷ୍ଟମାଷ୍ଟର ସବୁ କାମ କରନ୍ତି । ସବୁ ପୋଷ୍ଟ ଅଫିସରେ କେତେ ଜଣ ଡାକ ପିଅନ୍ ଥାଆନ୍ତି ।




[ ଗୋଟିଏ ଡାକଘର ]

**ଡାକ ବିଭାଗର ଆୟ ବ୍ୟୟ**—ଡାକ ବିଭାଗର ପ୍ରତ୍ୟେକ କାମ ପାଇଁ ଆମକୁ କିଛି ଖର୍ଚ୍ଚ କରିବାକୁ ପଡ଼େ । ଚିଠି ଲେଖିବା ପାଇଁ ଆମକୁ ଡାକଘରୁ କାର୍ଡ଼, ଲଫାପା କିଣିବାକୁ ହୁଏ । ଟଙ୍କା ମନିଅର୍ଡ଼ର କରି ପଠାଇବା ପାଇଁ ଆମକୁ କିଛି ମାସୁଲ ବା ମନିଅର୍ଡ଼ର କମିଶନ୍ (Money Order commission) ଦେବାକୁ ପଡ଼େ । ଏହାଛଡ଼ା ଯେ କୌଣସି ଚିଠିପତ୍ର ରେଜିଷ୍ଟ୍ରି କରି ପଠାଇବା ପାଇଁ, ଜିନିଷପତ୍ର ପାର୍ସେଲ କରି ପଠାଇବା ପାଇଁ, ଖବରକାଗଜ, ମାସିକ ପତ୍ରିକା ପ୍ରଭୃତି ବୁକ୍‌ପୋଷ୍ଟରେ

ପଠାଇବା ପାଇଁ, ବେଶି ଟଙ୍କାର ନୋଟ୍, ଦାମିକା ଗହଣା, ଘଡ଼ି ପ୍ରଭୃତି ଇନ୍‌ସିଓର କରି ପଠାଇବା ପାଇଁ ଆମକୁ ମାସୁଲ ବା ଫି ଦେବାକୁ ହୁଏ । ଏ ସବୁ ଡାକବିଭାଗର ଆୟ । ଡାକଘରକୁ ଗଲେ ମନେହୁଏ ଯେପରି କି ଏହା ଗୋଟିଏ ବଡ଼ ସରକାରୀ ଦୋକାନ । ସକାଳ ୧୦ଟାରୁ ଉପରଓଳି ୪ଟା ପର୍ଯ୍ୟନ୍ତ ସବୁବେଳେ କିଣାବିକା ଚାଲିଛି । ସାରା ଭାରତରେ ହଜାର ହଜାର ଡାକଘର ଅଛି । ଡାକବିଭାଗରୁ ସରକାରଙ୍କର ଭଲ ଆୟ ହୁଏ । ଡାକ ବିଭାଗରୁ ଯାହା ଆୟ ହୁଏ ତହିଁରୁ କିଛି ଡାକବିଭାଗରେ ଖର୍ଚ୍ଚ ହୁଏ । ନୂଆ ଡାକଘର ବସାଇବା, ଡାକଘର ମରାମତି କରିବା, ନାନାପ୍ରକାର ଫାରମ୍ ଛାପିବା, ବିଭାଗୀୟ କର୍ମଚାରୀମାନଙ୍କୁ ଦରମା ଦେବା, ନିମ୍ନକର୍ମଚାରୀଙ୍କୁ ପୋଷାକ ଦେବା—ଏଗୁଡ଼ିକ ପ୍ରଧାନ ବ୍ୟୟ ।

**ଡାକଘରେ ଚିଠିପତ୍ର ସଂଗ୍ରହ କରିବା, ପଠାଇବା ଓ ବାଣ୍ଟିବା**—ସବୁ ଡାକଘରେ ଦେଖିବ, ଗୋଟିଏ ଗୋଟିଏ ଚିଠି ପକାଇବାର ବାକ୍ସ (Letter Box) ଅଛି । ସହରମାନଙ୍କରେ ଡାକଘର ଛଡ଼ା ରାସ୍ତାକଡ଼ରେ ମଧ୍ୟ ସ୍ଥାନେ ସ୍ଥାନେ ଚିଠି-ବାକ୍ସ ଥାଏ । ଚିଠି-ବାକ୍ସ ଖୋଲିବାର ନିର୍ଦ୍ଦିଷ୍ଟ ସମୟ ଥାଏ । ସେହି ସମୟରେ ଚିଠିଗୁଡ଼ିକ ବାହାର କରି ନେଇ ପିଅନ୍‌ମାନେ ପ୍ରତି ଚିଠି ଉପରେ ମୋହର କରନ୍ତି । ଏହି ମୋହରରେ ପୋଷ୍ଟଅଫିସର ନାମ ଓ ତାରିଖ ଥାଏ । ଏଥିରୁ ଜାଣିହୁଏ କେଉଁ ପୋଷ୍ଟଅଫିସରୁ ଚିଠି ଆସିଛି । ତା' ପରେ ଚିଠିପତ୍ର ସବୁ ଡାକମୁଣାରେ ପୂରାଇ ମୁଣାରେ ମୁହଁ ବାନ୍ଧି ତାହା ଉପରେ ସୀଲ ମୋହର କରାହୁଏ । ବଡ଼ ଡାକଘରେ ଅନେକ ଗୁଡ଼ିଏ ମୁଣା ହୁଏ । ଏହି ମୁଣାଗୁଡ଼ିକ ଡାକ ବସ୍ ( Mail Bus ) ରେ R. M. S.କୁ ପଠାଯାଏ । ଦୂର

ମଫସଲରେ ଯେଉଁଠାରେ ବସ୍ ଚଳପ୍ରଚଳ ହେବାର ସୁବିଧା ନାହିଁ ସେଠାକାର ଡାକଘରୁ ହର୍କରା (Runner) ଡାକମୁଣା ନେଇ ପାଦରେ ଚାଲି ଚାଲି ଆସି ପାଖରେ ଥିବା କୌଣସି ନିର୍ଦ୍ଦିଷ୍ଟ ଡାକଘରେ ଦେଇଯାଏ ।



[ ଆର୍. ଏମ୍. ଏସ୍.ରେ ଚିଠି ବଛା ହେଉଛି ]

କେତେ ଜାଗାରେ ଡାକବିଭାଗର ଆର୍. ଏମ୍. ଏସ୍. (R.M.S—Railway Mail Service)ଅଫିସ୍ ଅଛି । ଏଠାରେ ଚିଠିପତ୍ର ବଛାବଛି କରି ଭିନ୍ନ ଭିନ୍ନ ମୁଣାରେ ପୂରାଇ ସୀଲ ମୋହର କରିବାପାଇଁ ଲୋକ ଥାଆନ୍ତି । ଏଠାରେ ଡାକସବୁ ବଛାବଛି କରି

ଭିନ୍ନ ଭିନ୍ନ ପୋଷ୍ଟଅଫିସକୁ ପଠାଇ ଦିଆଯାଏ । ଡାକ ନେବା ପାଇଁ ରେଲବାଇ ବିଭାଗ ଡାକଗାଡ଼ିର (Mail train) ବ୍ୟବସ୍ଥା କରିଅଛି । ଡାକଗାଡ଼ି ଅତି ଚଞ୍ଚଳଗତିରେ ଚାଲେ । ତେଣୁ ଛୋଟ ଷ୍ଟେସନମାନଙ୍କରେ ଅଟକେ ନାହିଁ । ଡାକଗାଡ଼ିର ଓ ପାସେଞ୍ଜର ଗାଡ଼ିର ଗୋଟିଏ ଡବାରେ ଡାକବିଭାଗର ଲୋକ ଥାଆନ୍ତି । ସେମାନେ ପ୍ରତି ଷ୍ଟେସନରୁ ଡାକମୁଣା ସବୁ ନେଇ ଡବାରେ ରଖନ୍ତି ଓ ଯେଉଁ ଡାକମୁଣା ଯେଉଁ ଷ୍ଟେସନ ପାଖରେ ଥିବା ପୋଷ୍ଟ ଅଫିସକୁ ପଠାଇବାର କଥା ସେଗୁଡ଼ିକ ଓହ୍ଲାଇ ଦିଅନ୍ତି । ଏହି ଡାକମୁଣାସବୁ ମେଲ୍ ବସ୍‌ରେ ନିର୍ଦ୍ଦିଷ୍ଟ ପୋଷ୍ଟ ଅଫିସକୁ ଯାଏ । ପୋଷ୍ଟ ଅଫିସରେ ପହଞ୍ଚିଲେ ମୁଣା ଭିତରୁ ଚିଠିପତ୍ର ବାହାର କରି ତାହା ଉପରେ ମୋହର ଦିଆଯାଏ; ତା'ପରେ ଚିଠିପତ୍ର ସହରର ଭିନ୍ନ ଭିନ୍ନ ବଜାର ବା ମହଲ୍ଲା ଅନୁସାରେ ଭାଗ କରି ଡାକ-ପିଅନ୍‌ମାନଙ୍କୁ ଦିଆଯାଏ । ଡାକପିଅନ୍ ଘର ଘର ବୁଲି ଚିଠିପତ୍ର ବାଣ୍ଟିଦେଇ ଆସେ । ସହରର ବଡ଼ ବଡ଼ ଅଫିସମାନଙ୍କୁ ପ୍ରତିଦିନ ବହୁତ ଚିଠିପତ୍ର ଆସେ । ଏ ଡାକସବୁ ଅଫିସ-ପିଅନମାନେ ଡାକ-ଘରକୁ ଯାଇ ନେଇଆସନ୍ତି । ମଫସଲରେ ଡାକପିଅନ ସପ୍ତାହରେ ଥରେ ବା ଦୁଇଥର ଗାଁକୁ ଯାଇ ଚିଠି ଦେଇ ଆସେ ।

## ଚିଠିପତ୍ରରେ ଠିକଣା ଲେଖିବାର ପ୍ରଣାଳୀ

ଚିଠିର ଠିକଣାରେ ନିମ୍ନଲିଖିତ ବିଷୟମାନ ଲେଖାଯିବା ଉଚିତ— (କ) ଚିଠି ପାଇବା ଲୋକଙ୍କ ନାମ, (ଖ) ଗ୍ରାମ କିମ୍ବା ମହଲ୍ଲାର ନାମ, (ଗ) ପୋଷ୍ଟ ଅଫିସର ନାମ ଏବଂ (ଘ) ଜିଲ୍ଲାର ନାମ ।

ଚିଠିର ଠିକଣା ସାବଧାନତା ସହ ଲେଖିବାକୁ ହୁଏ । ଏହା ଭୁଲ ବା ଅସ୍ପଷ୍ଟ ହେଲେ ଚିଠି ମିଳିବାରେ ବିଳମ୍ବ ହୁଏ ବା ମିଳେ ନାହିଁ ।

ଲଫାପାର ଯେଉଁ ପାଖରେ ଠିକଣା ଲେଖାଯାଏ ସେହି ପାଖର ଉପର ଡାହାଣ କୋଣରେ ଟିକଟ ଲଗାଯିବା ଉଚିତ ।

| | |
|---|---|
| | ଟିକଟ |
| ଶ୍ରୀ ଭିକାରିଚରଣ ମହାନ୍ତି<br>ଗ୍ରାମ ବଡ଼ନୟାଦା<br>ପୋ:ଅ: ଶିମୁଳିଆ<br>ଜିଲ୍ଲା ବାଲେଶ୍ୱର | |

**ମନିଅର୍ଡ଼ର**—ଡାକଘର ସାହାଯ୍ୟରେ ଆମ୍ଭେମାନେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଓ ଦୂର ବିଦେଶକୁ ଖୁବ୍ ସୁବିଧାରେ ଟଙ୍କା ପଠାଇପାରୁଁ । ଟଙ୍କା ପଠାଇବା ପାଇଁ ଡାକଘରେ ଗୋଟିଏ ଫାରମ୍ ମାଗଣାରେ ମିଳେ । ତାହାର ନାମ ମନିଅର୍ଡ଼ର ଫାରମ୍ (Money Order Form) । ଏହି ଫାରମ୍ଟି ଆଣି ସେଥିରେ ଗାରଦ୍ୱାରା ସୂଚିତ ଶୂନ୍ୟସ୍ଥାନମାନ ଠିକ୍‌ଭାବରେ ପୂରଣ କରି ଟଙ୍କା ଓ ଫାରମ୍ ଡାକଘରେ ଦେବାକୁ ହୁଏ । ମନିଅର୍ଡ଼ର ଯୋଗେ ଟଙ୍କା ପଠାଇବା ପାଇଁ ନିର୍ଦ୍ଦିଷ୍ଟ ହାରରେ ମନିଅର୍ଡ଼ର କମିଶନ୍ ଦେବାକୁ ହୁଏ ।

ଡାକଘରର କିରାଣୀ ବା ପୋଷ୍ଟମାଷ୍ଟର ଟଙ୍କା ଓ ଫାରମ୍ ନେଇ ଗୋଟିଏ ରସିଦ ଦିଅନ୍ତି । ଟଙ୍କା ସେହି ଡାକଘରେ ରହେ । କେବଳ ଫାରମ୍ଟି ନିର୍ଦ୍ଦିଷ୍ଟ ଡାକଘରକୁ ପଠାଇ ଦିଆଯାଏ । ସେହି ସ୍ଥାନରେ ପାଇବା ଲୋକର ଦସ୍ତଖତ ନେଇ ତାହାକୁ ଟଙ୍କା ଦିଆଯାଏ । ଫାରମ୍ର ତଳଭାଗରେ ଥିବା ପ୍ରାପ୍ତିସ୍ୱୀକାର

(Acknowledgment) ଅଂଶଟି ପାଇବା ଲୋକର ଦସ୍ତଖତ ସହିତ ଟଙ୍କା ପଠାଇବା ଲୋକ ନିକଟକୁ ଫେରିଆସେ । ଏ ଖଣ୍ଡିକ ପାଇ ସେ ନିଶ୍ଚିତରୂପେ ଜାଣେ ଯେ ଟଙ୍କା ଠିକଣା ଲୋକଠାରେ ପହଞ୍ଚିଛି । ଫାରମ୍‌ର ସବାନିମ୍ନ ଅଂଶରେ କୁପନ (Coupon) ଲେଖାଥାଏ । ଏହି ଅଂଶରେ ପଠାଇବା ବ୍ୟକ୍ତି କିଛି ଖବର ଲେଖିପାରେ; ପାଇବା ଲୋକକୁ ଟଙ୍କା ଦେଲାବେଳେ ଏ ଅଂଶଟି ଚିଣ୍ଡାଇ ତାହାକୁ ଦିଆଯାଏ । ଏଥି ସହିତ ମନିଅର୍ଡ଼ର ଫାରମ୍‌ର ନମୁନା ଦିଆଯାଇଅଛି । ତାହା ଉପର ପୂରଣ କରାଯାଇଅଛି ମନଦେଇ ଦେଖ ।

**ପାର୍ସେଲ**—ଡାକଦ୍ୱାରା ମଧ୍ୟ ଜିନିଷ ପାର୍ସେଲ କରି ପଠାଯାଏ । ବେଶି ଦାମର ଜିନିଷ ପାର୍ସେଲ କରି ପଠାଇବାକୁ ହେଲେ ଇନସିଓର କରି ପଠାଇବା ଭଲ । ଗୋଟିଏ କଥା ମନେ ରଖ, ଭାରତରେ ଯେତେ ଦୂରବର୍ତ୍ତୀ ସ୍ଥାନ ହେଉ ପଛକେ ଶଠି, ଟଙ୍କା ବା ପାର୍ସେଲ ପଠାଇବା ପାଇଁ ଏକା ଖର୍ଚ୍ଚ ଲାଗେ । ଭାରତ ବାହାରେ ଅନ୍ୟ ଦେଶକୁ ପଠାଇବା ପାଇଁ ଡାକଖର୍ଚ୍ଚର ହାର ଅଲଗା ।

**ବିମାନ ଡାକ**—ବିମାନ ବା ଉଡ଼ାଜାହାଜ ସାହାଯ୍ୟରେ ଭାରତ ମଧ୍ୟରେ ଓ ଭାରତ ବାହାରକୁ ଡାକ ପଠାଇବାର ସୁବିଧା ହୋଇଅଛି । ବିମାନ ଡାକର ମାସୁଲ ହାର, "ଡାକ ଓ ତାର ବିଭାଗର ସଂକ୍ଷିପ୍ତ ନିୟମାବଳୀ" ଦେଖିଲେ ଜାଣିବ । ଏହି ନିୟମାବଳୀ ପୁସ୍ତକ ଆକାରରେ ଛପା ହୋଇ ପୋଷ୍ଟ ଅଫିସରେ ବିକ୍ରି ହୁଏ । ଏଥିରୁ ଖଣ୍ଡେ ତୁମ ପାଖରେ ରଖିବା ଦରକାର ।

**ସେଭିଙ୍ଗ୍ସ୍ ବ୍ୟାଙ୍କ**—ଡାକଘରେ ଟଙ୍କା ଜମା ରଖିବାର ବ୍ୟବସ୍ଥା ଅଛି । ବଳକା ଟଙ୍କା ଘରେ ରଖିଲେ ଅଯଥା ଖର୍ଚ୍ଚ ହୋଇଯାଇପାରେ, ଚୋର ନେଇ ଯାଇପାରେ । ସେଥିପାଇଁ ଡାକଘରେ ସେଭିଙ୍ଗ୍ସ୍ ବ୍ୟାଙ୍କ୍ (Savings Bank) ରେ ଟଙ୍କା ଜମା ରଖିବା ଉଚିତ ଓ ନିରାପଦ । ଟ୧୲ରୁ କମ୍ ବା ଟ୧୫,୦୦୦ରୁ ବେଶି ସେଭିଙ୍ଗ୍ସ୍ ବ୍ୟାଙ୍କ୍ରେ ଜମା ରଖାଯାଇ ପାରିବ ନାହିଁ । ସେଭିଙ୍ଗ୍ସ ବ୍ୟାଙ୍କ୍ରେ ଟଙ୍କା ଜମା ରଖିଲେ ସୁଧ ମିଳେ । ଅଭାବ ଅସୁବିଧା, ବିବାହ ବ୍ରତ, ବେରାମ ଆରାମ ପାଇଁ ପ୍ରତ୍ୟେକ ଲୋକର ନିଜ ଆୟରୁ କିଛି କିଛି ସଞ୍ଚୟ କରି ରଖିବା ଦରକାର । ସେଭିଙ୍ଗ୍ସ ବ୍ୟାଙ୍କରେ ଟଙ୍କା ଜମା ରଖିବାକୁ ହେଲେ ପୋଷ୍ଟମାଷ୍ଟରଙ୍କ ନିକଟକୁ ଦରଖାସ୍ତ କରିବାକୁ ହେବ । ସେ ତୁମ ନାମରେ ହିସାବ ଲେଖି ଗୋଟିଏ ପାସ୍ ବହି (Pass Book) ତୁମକୁ ଦେବେ । ଏହି ବହିରେ ଗୋଟିଏ ନମ୍ବର ଥାଏ । ତୁମେ ଯେତେ ଥର ଟଙ୍କା ଜମା ଦେବ ସବୁଥର ଏହି ବହିରେ ଲେଖାହୋଇ ମୋଟ କରାଯାଏ । ଦରକାର ପଡ଼ିଲେ ତୁମେ ଏହି ଟଙ୍କାରୁ କିଛି କିଛି ଆଣିପାରିବ । ବିଶେଷ ଦରକାର ପଡ଼ିଲେ ସବୁ ଟଙ୍କା ବାହାର କରି ଆଣି ତୁମ ନାମରେ ଥିବା ହିସାବ ନିକାସ କରିଦେବ । ନାବାଳକ ବା ନାବାଳିକାଙ୍କ ନାମରେ ବାପା ବା ଅନ୍ୟ ମୁରବି ହିସାବ ଖୋଲି-ପାରିବେ । ସେଭିଙ୍ଗ୍ସ୍ ବ୍ୟାଙ୍କରୁ ଟଙ୍କା ବାହାର କରିବାକୁ ହେଲେ ଗୋଟିଏ ଫାରମ୍ରେ (Withdrawal form) ପୋଷ୍ଟମାଷ୍ଟରଙ୍କ ନିକଟକୁ ଦରଖାସ୍ତ କରିବାକୁ ହୁଏ । ସପ୍ତାହରେ ଥରେ ମାତ୍ର ଟଙ୍କା ବାହାର କରାଯାଇପାରେ । ସେଭିଙ୍ଗ୍ସ୍ ବ୍ୟାଙ୍କ୍ ବିଷୟରେ ଆଉ ଅଧିକ କଥା ଡାକ ଓ ତାର ବିଭାଗର ସଂକ୍ଷିପ୍ତ ନିୟମାବଳୀରୁ ଜାଣିପାରିବ ।

**ତାରବିଭାଗ**—କେତେକ ପୋଷ୍ଟ ଅଫିସ ସାଙ୍ଗରେ ତାର-ଅଫିସ ସଂଯୁକ୍ତ ହୋଇଅଛି । କଟକ କଲିକତା ପ୍ରଭୃତି ବଡ଼ ବଡ଼ ସହରରେ କାମର ଭିଡ଼ ଏତେ ବେଶି ଯେ ସେଠାରେ ତାର-ଅଫିସ (Telegraph Office) ଓ ପୋଷ୍ଟ ଅଫିସ ଅଲଗା ଅଲଗା ରହିଅଛି ।

କୌଣସି ଜରୁରୀ ଖବର ପଠାଇବା ଦରକାର ହେଲେ ତାର କରିବାକୁ ହୁଏ । ଚିଠିରେ ଖବର ପହଞ୍ଚିବାକୁ ଦୁଇ ତିନି ଦିନ ଲାଗେ । ତାର କଲେ ଖବରଟି କେତେ ଘଣ୍ଟା ମଧ୍ୟରେ ତୁରନ୍ତ ପହଞ୍ଚିପାଏ । ତାର କରିବାରେ ଖର୍ଚ୍ଚ ବେଶି ପଡ଼େ । ତେଣୁ ବିଶେଷ ଦରକାର ନ ହେଲେ କେହି ତାର କରନ୍ତି ନାହିଁ । ଦୁଇ ପ୍ରକାର ତାର କରାଯାଇପାରେ—ଏକ୍‌ସପ୍ରେସ୍ (Express) ବା ଜରୁରୀ, ସାଧାରଣ (Ordinary) । ଶବ୍ଦସଂଖ୍ୟାକୁ ଗଣି ତାର-ମାସୁଲ ଦେବାକୁ ହୁଏ ।

ଭାରତ ବାହାର କୌଣସି ଦେଶକୁ ତାର କରିବାର ମାସୁଲ ସ୍ୱତନ୍ତ୍ର । ତାର କରିବା ପାଇଁ ପୋଷ୍ଟ ଅଫିସରେ ବା ତାର-ଅଫିସରେ ଗୋଟିଏ ଫାରମ୍ ମାଗଣା ମିଳେ । ଏହି ଫାରମ୍‌ଟି ପୂରଣ କରି ଫାରମ୍ ସହିତ ମାସୁଲ ଦାଖଲ କରିବାକୁ ହୁଏ । ଏଥି ସହିତ ଫାରମ୍‌ର ନମୁନା ଦିଆହୋଇଅଛି ଓ ଫାରମ୍ କପରି ପୂରଣ କରିବାକୁ ହୁଏ ଦେଖାଇ ଦିଆହୋଇଅଛି । ଆଗେ କେବଳ ଇଂରେଜୀରେ ଭାଷା ତାର କରାଯାଉଥିଲା । ବର୍ତ୍ତମାନ ଭାରତୀୟ ଭାଷାରେ ତାର କରାଯାଇପାରେ, କିନ୍ତୁ ସେହି ଶବ୍ଦଗୁଡ଼ିକ ଇଂରେଜୀ ଅକ୍ଷରରେ ଲେଖିବାକୁ ହେବ ।

**ତାର ଯୋଗେ ମନିଅର୍ଡ଼ର— (Telegraphic Money Order )** ଜରୁରୀ ଟଙ୍କା ପଠାଇବାର ଦରକାର ହେଲେ ତାର ଯୋଗେ ମନିଅର୍ଡ଼ର କରବ । ଟେଲିଗ୍ରାଫିକ୍ ମନିଅର୍ଡ଼ର ପାଇଁ ଅଲଗା ଫାରମ୍ ନାହିଁ । ସାଧାରଣ ମନିଅର୍ଡ଼ର ଫାରମ୍ ପୂରଣ କର "By Telegram"(ଟେଲିଗ୍ରାମ୍ ଦ୍ୱାରା) ଲେଖିବାକୁ ହୁଏ ।

## ପ୍ରଶ୍ନ

୧ । ଡ଼ାକବିଭାଗ ଦ୍ୱାରା କ କ ସୁବିଧା 'ହୋଇଅଛି ?

୨ । ତୁମେ ବାଲେଶ୍ୱର ଜିଲାସ୍କୁଲର ଅଷ୍ଟମଶ୍ରେଣୀରେ ପଢ଼ୁଥିବା ନରହର ତ୍ରିପାଠୀ ପାଖକୁ ଲଫାପାରେ ଖଣ୍ଡେ ଚିଠି ଲେଖି ସ୍ଥାନୀୟ ଡ଼ାକଘରର ଚିଠି-ବାକ୍ସ୍‌ରେ ଚିଠିଖଣ୍ଡିକ ପକାଇଲ । ଏ ଚିଠି କେଉଁ କେଉଁ ଲୋକ ଓ ଯାନବାହନଦ୍ୱାରା ଯାଇ ପାଇବା ଲୋକ ପାଖରେ ପହଞ୍ଚିବ ।

୩ । "ନାଗରିକ ମିତ୍ର" ୧ମ ଓ ୨ୟ ଭାଗ କିଣିବା ପାଇଁ କୌଣସି ପୁସ୍ତକ ବିକ୍ରେତାଙ୍କ ଠିକଣାରେ ଦୁଇଟି ପୁସ୍ତକର ମୂଲ୍ୟ ଅଗ୍ରୀମ ମନିଅର୍ଡ଼ର କର ପଠାଅ ।
ମନିଅର୍ଡ଼ର ଫାରମ୍ ଠିକ୍‌ଭାବରେ ପୂରଣ କର ତୁମ ଶିକ୍ଷକଙ୍କୁ ଦେଖାଅ ।

ପୋଷ୍ଟ ଅଫିସ୍ ସେଭିଙ୍ଗ୍‌ସ୍ ବ୍ୟାଙ୍କ୍‌ରେ ଟଙ୍କା ଜମା ରଖିବାର ସୁବିଧା କଅଣ ?

CLASS AMOUNT NO DATE



INDIA POST AND TELEGRAPHS

RECEIPT FOR INLAND TELEGRAPHS

OFFICE OF ORIGIN

Class Amount No Date INDIAN POST AND TELEGRAPHS

INLAND TELEGRAM A

Office of Origin ____________ Sent at ____________

Code Service Instructions To ____________

By

Words

( SENDER TO WRITE BELOW THIS LINE ONLY )

DELETE CATEGORY NOT REQUIRED ORDINARY-EXPRESS-NON-STATE-STATE

| | | |
|---|---|---|
| Special Instructions by sender, e. g, "Reply Paid etc, | To | NAME Sudhakar Sahu<br>ADDRESS Cloth Merchant<br>TELEGRAPH OFFICE Baripada |

| | | |
|---|---|---|
| Father | Very | ill |
| Come | Soon | |
| | | Bansidhar |

Space for postage stamps below above line and at the back.

1. Name of the sender should be written in a separate line just below the message if required to be Telegraphed.

2. Address fully and correctly for quick delivery.

3. Use high denomination stamps as far as possible.

IN CASE OF COMPLAINTS OR APPLICATION FOR REFUND ETC, KINDLY SEE INSTRUCTIONS GIVEN IN CLAUSE 47, 372 & 388 OF POST & TELEGRAPH GUIDE.

(ADDITIONAL SPACE FOR STAMPS)

(ADDITIONAL SPACE FOR TEXT)

NOT TO BE TELEGRAPHED

NAME AND ADDRESS OR PHONE NO. OF SENDER

Bansidhar Sahu
Cloth dealer
Choudhuri Bazar, Cuttack

୫ । ତାର କରିବା କାହିଁକି ଦରକାର ହୁଏ ?

୬ । ତାରଯୋଗେ କିପରି ମନିଅର୍ଡ଼ର କରାଯାଏ ? ଏପରି ମନି-ଅର୍ଡ଼ର କରିବା ଆବଶ୍ୟକ ହୁଏ କାହିଁକି ?

୭ । ତମ ବାପାଙ୍କ ପାଖକୁ ଗୋଟିଏ ବୋତଲ ଔଷଧ ପାର୍ସେଲ କରି ପଠାଇବାକୁ ହେଲେ କିପରି କଣ କରିବ ?

୮ । ତଳେ ଦିଆଯାଇଥିବା ବାକ୍ୟମାନଙ୍କରେ ଶୂନ୍ୟସ୍ଥାନମାନ ଉପଯୁକ୍ତ ଶବ୍ଦଦ୍ୱାରା ପୂରଣ କର :—.

(କ) —ସାହାଯ୍ୟରେ ଆମ୍ଭେମାନେ—ଖରଚରେ—ପଠାଇ ପାରୁଅଛୁଁ ।

(ଖ) — — ଘର ଘର ବୁଲି—ବାଣ୍ଟେ ।

(ଗ) କୌଣସି—ଖବର ପଠାଇବାକୁ ହେଲେ—କରିବାକୁ ହୁଏ ।

(ଘ) ଭାରତର ଯେ କୌଣସି ସ୍ଥାନକୁ —, — ବା — ପଠାଇବା ପାଇଁ — ଖର୍ଚ୍ଚ ଲାଗେ ।

## ତୃତୀୟ ଅଧ୍ୟାୟ

### ପୁଲିସ ବିଭାଗ

**ପୁଲିସ ବିଭାଗର ଆବଶ୍ୟକତା**—ରାମାୟଣ ଓ ମହାଭାରତ ଯୁଗରେ ରାଜାମାନେ କପରି ରାଜ୍ୟଶାସନ କରୁଥିଲେ, ତାହା ତୁମ୍ଭେମାନେ ପଢ଼ିଥିବ ବା ଶୁଣିଥିବ । ସେହିପରି ପୁରୁଣାକାଳରେ ସୁଦ୍ଧା ରାଜାମାନେ ଚର, କଟୁଆଳ, ପାଇକମାନଙ୍କ ସାହାଯ୍ୟରେ ରାଜ୍ୟର ଭଲମନ୍ଦ ଖବର ନେଉଥିଲେ ଓ ଚୋର, ଖଣ୍ଟ, ଗୁଣ୍ଡାମାନଙ୍କୁ ଧରି ଦଣ୍ଡ ଦେଉଥିଲେ । ରାଜାମାନଙ୍କର କାମ ଥିଲା—ଦୁଷ୍ଟଦମନ ଓ ଶିଷ୍ଟପାଳନ । ଆଜିକାଲିର ସରକାର ମଧ୍ୟ ଦୁଷ୍ଟଲୋକମାନଙ୍କୁ ଦମନ ନ କଲେ ସୁରୁଖୁରୁରେ ଶାସନକାର୍ଯ୍ୟ ଚଳାଇ ପାରିବେ ନାହିଁ । ଦେଶରେ ଚୋରି, ଡକାଏତି, ଜାଲ, ଜୁଆଚୋରି, ଲାଞ୍ଚ, ମିଛ, ଜୋରଜୁଲୁମ୍, ଠକାମି ପ୍ରଭୃତି ବ୍ୟାପିଯିବ । ଦେଶରେ ଶାନ୍ତି ରହିବ ନାହିଁ । ଲୋକଙ୍କର ଜୀବନ ଓ ଧନ ନିରାପଦ ରହିବ ନାହିଁ । ଦେଶରେ କେହି ସୁଖଶାନ୍ତିରେ ରହି ପାରିବେ ନାହିଁ । ଆଜିକାଲି ଯୁଗରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ପାଇଁ ସବୁ ଦେଶରେ ପୁଲିସବିଭାଗ ରହିଅଛି ।

**ପୁଲିସବିଭାଗର କର୍ମଚାରୀ**—ତୁମେମାନେ ଜାଣିଥିବ, ଗାଁମାନଙ୍କରେ ଜଣେ ଜଣେ ଚଉକିଆ ନେଳିଆ ପୋଷାକ ପିନ୍ଧି ହାତରେ ଗୋଟିଏ ଠେଙ୍ଗା ଓ ଗୋଟିଏ ଲଣ୍ଠନ ଧରି ରାତିଯାକ ପହରା ଦେଉଥାନ୍ତି । ଗାଁରେ ଚୋରି ଡକାୟତି ହେଲେ, କଳିକଜିଆ ଓ ମାରପିଟ ହେଲେ ବା ଅନ୍ୟ କୌଣସି ପ୍ରକାର ଅଶାନ୍ତି ଘଟିଲେ ଏମାନେ ଥାନାକୁ ଯାଇ ଖବର ଦିଅନ୍ତି । ଏମାନେ ହେଲେ ପୁଲିସ-ବିଭାଗର ସବୁଠାରୁ ତଳିଆ କର୍ମଚାରୀ । ସହରମାନଙ୍କରେ କନ୍‌ଷ୍ଟେବଲ୍ ଏହି କାମ କରନ୍ତି ।

କେତେକ ଗାଁ ମିଶି ଗୋଟିଏ ଇଉନିୟନ୍ ଓ କେତେକ ଇଉନିୟନ୍ ମିଶି ଗୋଟିଏ ଥାନା ହୁଏ । ପ୍ରତି ସବ୍‌ଡିଭିଜନରେ କେତେଗୁଡ଼ିଏ ଥାନା ଥାଏ । ପ୍ରତି ଥାନାରେ ଜଣେ ପୁଲିସ ସବ୍-ଇନ୍‌ସ୍ପେକ୍ଟର ( Sub-Inspector of Police ) ଥାନ୍ତି । ସେ ଥାନାର ପ୍ରଧାନ କର୍ମଚାରୀ । ତାଙ୍କ ତଳେ ଜଣେ ସହକାରୀ



[ଚଉକିଦାର)                (କନ୍‌ଷ୍ଟେବଲ)

ସବ୍-ଇନ୍‌ସ୍ପେକ୍ଟର ( Assistant Sub-Inspector ), ଜମାଦାର, କନ୍‌ଷ୍ଟେବଲ, ଦଫାଦାର ଓ ଚଉକିଆମାନେ ଥାଆନ୍ତି । ଥାନା ଅଧୀନରେ ଥିବା ଗାଁମାନଙ୍କରେ ଶାନ୍ତିରକ୍ଷା କରିବା ଥାନା

କର୍ମଚାରୀମାନଙ୍କ କାମ । ପ୍ରତ୍ୟେକ ସବ୍‌ଡିଭିଜନ୍ ମହକୁମାରେ ଗୋଟିଏ ବଡ଼ ଥାନା ଥାଏ । ବଡ଼ ସବ୍‌ଡିଭିଜନମାନଙ୍କରେ ଜଣେ ଜଣେ ଡେପୁଟିସୁପରିଣ୍ଟେଣ୍ଡେଣ୍ଟ (D. S. P.) ବା ଆସିଷ୍ଟାଣ୍ଟ ସୁପରିଣ୍ଟେ-ଣ୍ଡେଣ୍ଟ (A. S. P.) ଥାଆନ୍ତି । ସାନ ସବ୍-ଡିଭିଜନମାନଙ୍କରେ ଜଣେ ଲେଖାଏଁ ପୁଲିସ ଇନ୍‌ସ୍ପେକ୍ଟର (Inspector of Police) ରହନ୍ତି । ସବ୍‌ଡିଭିଜନ୍ ସ୍ତରରେ ଏମାନେ ଥାନାର ପ୍ରଧାନ କର୍ମଚାରୀ । ଜିଲ୍ଲା ମହକୁମାରେ ଜଣେ ଲେଖାଏଁ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ( S. P. ), ଆଉ ତାଙ୍କ ତଳେ କେତେଜଣ ଡେପୁଟି ସୁପରି-ଣ୍ଟେଣ୍ଡେଣ୍ଟ ( D. S. P. ), ଇନ୍‌ସ୍ପେକ୍ଟର ଓ ସବ୍-ଇନ୍‌ସ୍ପେକ୍ଟର ଥା'ନ୍ତି । ପୁଲିସବିଭାଗର ସବୁଠାରୁ ବଡ଼ କର୍ମଚାରୀ ହେଉଛନ୍ତି ଇନ୍‌ସ୍ପେକ୍ଟର ଜେନେରାଲ୍ (Inspector General—I. G.) । ପ୍ରତି ପ୍ରଦେଶରେ ଜଣେ ଜଣେ ଇନ୍‌ସ୍ପେକ୍ଟର ଜେନେରାଲ୍ ଥାନ୍ତି । ତାଙ୍କ କ୍ଷମତା ଖୁବ୍ ବେଶି । ଏହିପରି କର୍ମଚାରୀମାନଙ୍କୁ ନେଇ ପୁଲିସବିଭାଗ ଗଠିତ ।

କୋରାପୁଟ ଜିଲ୍ଲାରେ ଚୌକିଦାର ନ ଥାନ୍ତି । ପ୍ରତି ଗାଁରେ ଜଣେ ଜଣେ ନାୟକ ଥାଆନ୍ତି । ଗଞ୍ଜାମଜିଲ୍ଲାର ପ୍ରତି ଗାଁରେ ଜଣେ ଜଣେ ତଳିଆରି ଥାଆନ୍ତି ।

ପ୍ରଦେଶର ପ୍ରଧାନ ସହରମାନଙ୍କରେ କେତେକ ରିଜର୍ଭ (Reserve) ପୁଲିସ ଥା'ନ୍ତି । କୌଣସି ଜାଗାରେ ବଡ଼ ଧରଣର ମାରପିଟ, ଗଣ୍ଡଗୋଳ ବା ଆଇନଅମାନ୍ୟ ହେଲେ ରିଜର୍ଭ ପୁଲିସ ସେଠାକୁ ତୁରନ୍ତ ଯାଇ ଶାନ୍ତି ସ୍ଥାପନ କରନ୍ତି ।

ପୁଲିସ ବିଭାଗର ଆଉ ଗୋଟିଏ ଶାଖା ବିଭାଗ ଅଛି । ତାହା ଗୁଇନ୍ଦା ପୁଲିସ ବିଭାଗ (C. I. D.) । ଏହି ବିଭାଗର କ୍ଷମତା ଖୁବ୍

ବେଶି । ଗୁଇନ୍ଦା ବିଭାଗର କର୍ମଚାରୀମାନେ ନାନା କୌଶଳ ପ୍ରୟୋଗ କରି ଗୁପ୍ତବେଶରେ ଯାଇ ଭିତରି ଖବରସବୁ ସଂଗ୍ରହ କରନ୍ତି । କୌଣସି ଲୋକ ବା ଦଳ ସରକାରଙ୍କ ବିରୁଦ୍ଧରେ ଗଲେ, ଆଇନଅମାନ୍ୟ କଲେ, ସରକାରଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କଲେ ବା ଲାଞ୍ଚ ନେଲେ ଗୁପ୍ତ-ପୁଲିସ ସାହାଯ୍ୟରେ ସରକାର ସବୁ ଖବର ନିଅନ୍ତି । ଏ ବିଭାଗ ସରକାରଙ୍କ ଆଖି ଓ କାନପରି ।

**ପୁଲିସବିଭାଗର କାର୍ଯ୍ୟ**—ଆଗରୁ କୁହାହୋଇଛି—ଶାନ୍ତି ରକ୍ଷା କରିବା ପୁଲିସବିଭାଗର କାମ । କେଉଁଠି ଚୋରି ଡକାଏତି



[ ପୁଲିସ କର୍ମଚାରୀ ଦୋଷୀକୁ ଧରି ନେଇ ଯାଉଛି ]

ହେଲେ, କେଉଁଠି କଳକଜଆ ବା ମାରପିଟ ହେଲେ, ପୁଲିସ କର୍ମଚାରୀଙ୍କୁ ଥାନାରେ ଏତଲା ଦେବାକୁ ହୁଏ । ଥାନା କର୍ମଚାରୀ ବିଷୟଟି ତଦନ୍ତ କରନ୍ତି । ଦୋଷୀ ଧରାପଡ଼ିଲେ ତାହାକୁ ଚାଲାଣ କରି ବିଚାର ପାଇଁ ମାଜିଷ୍ଟ୍ରେଟଙ୍କ ନିକଟକୁ ପଠାଇଦିଅନ୍ତି । ପୁଲିସ-କର୍ମଚାରୀମାନଙ୍କର ଦଣ୍ଡ ଦେବାର ଅଧିକାର ନାହିଁ । କୌଣସି-ଲୋକ ଅପରାଧ କରିବା ପୂର୍ବରୁ ତାହାକୁ ଧରିନେବା ବା ଅପରାଧ କରିବାକୁ ବାଧା ଦେବା ମଧ୍ୟ ପୁଲିସର କାମ । ସେମାନେ ରାସ୍ତାର ଛକମାନଙ୍କରେ ରହି ମୋଟର ଗାଡ଼ି, ଘୋଡ଼ାଗାଡ଼ି, ସାଇକେଲ ଓ ଲୋକଙ୍କ ଯିବାଆସିବା ସୁବିଧା କରିଦିଅନ୍ତି । ଯାନଯାତ୍ରା, ମେଳା, ସଭାସମିତିରେ ବହୁତ ଲୋକ ଏକାଠି ରୁଣ୍ଡ ହୁଅନ୍ତି । ଏଠାରେ ଶାନ୍ତିରକ୍ଷା କରିବାପାଇଁ ପୁଲିସକର୍ମଚାରୀମାନେ ଉପସ୍ଥିତ ଥାଆନ୍ତି । ରେଲଯାତ୍ରାରେ କୌଣସି ଦୁର୍ଘଟଣା ଘଟିଲେ ତାର ପ୍ରତିକାର ପାଇଁ ରେଲବିଭାଗର ପୁଲିସ (G.R.P.) ଅଛନ୍ତି । ମୋଟ ଉପରେ ଦେଶରେ ଶାନ୍ତି ରକ୍ଷା କରିବା ପୁଲିସଙ୍କ ପ୍ରଧାନ କାର୍ଯ୍ୟ ।

**ପୁଲିସଙ୍କ ପ୍ରତି ଆମର କର୍ତ୍ତବ୍ୟ**—ପୁଲିସଙ୍କ କାମ ଯେପରି ଲୋକଙ୍କ ସୁବିଧା ଦେଖିବା, ଆମର ମଧ୍ୟ ପୁଲିସଙ୍କୁ ସାହାଯ୍ୟ କରିବା ସେପରି କାମ । ଅନେକେ ପୁଲିସଙ୍କୁ ଡରନ୍ତି । ସେମାନଙ୍କର ଧାରଣା ଯେ ପୁଲିସ ବୃଥାରେ ଧରିନେବେ, ହଇରାଣ-ହର୍କତ କରିବେ । ପ୍ରକୃତରେ ପୁଲିସଙ୍କର ଏ କାମ ନୁହେ । ସେମାନେ ଲୋକଙ୍କୁ ସାହାଯ୍ୟ କରିବେ, ଲୋକମାନେ କପରି ଶାନ୍ତିରେ ରହିବେ ଓ ସେମାନଙ୍କ ଧନ ଜୀବନ ନିରାପଦ ରହିବ, ତାହା ଦେଖିବେ । ସେମାନେ ଆମ ବନ୍ଧୁ ପରି । ତାଙ୍କୁ ଡରିବାର କୌଣସି କାରଣ ନାହିଁ । ବରଂ ପୁଲିସଙ୍କ କାମରେ ତାଙ୍କୁ ସାହାଯ୍ୟ କରିବା ପ୍ରତ୍ୟେକ

ଦେଶବାସୀଙ୍କ କର୍ତ୍ତବ୍ୟ । କୌଣସି ଲୁଣ୍ଠମିଛ ବା ଅନ୍ୟ ଅପରାଧର ଖବର ପାଇଲେ ଥାନାରେ ଏ ଖବର ଦେବା ଲୋକମାନଙ୍କର ଉଚିତ । ପୁଲିସ ଯଦି ଅପରାଧୀକୁ ଧରିବା ପାଇଁ ସାହାଯ୍ୟ ମାଗନ୍ତି ତେବେ ତାଙ୍କୁ ସାହାଯ୍ୟ କରିବା ଉଚିତ । ଅପରାଧୀକୁ ଧରିବା ପାଇଁ ସାହାଯ୍ୟ କଲେ ତୁମେ ସମାଜର ଓ ଦେଶର ମଙ୍ଗଳ କରିବ ।

## ପ୍ରଶ୍ନ

୧ । ପୁଲିସବିଭାଗ କାହିଁକି ରହିଛି ?

୨ । ଗୁଇନ୍ଦା ପୁଲିସ ବିଭାଗର କାର୍ଯ୍ୟ କ'ଣ ?

୩ । ଦିନେ ରାତିରେ ତୁମ ଘରେ ଚୋର ପଶି କେତେକ ଜିନିଷପତ୍ର ନେଇ ପଳାଇଗଲା । ତୁମେ କ'ଣ କରିବ ?

୪ । ଶୂନ୍ୟ ସ୍ଥାନମାନ ଉପଯୁକ୍ତ ଶବ୍ଦ ବସାଇ ପୂରଣ କର:—

(କ) ଦେଶର — — ରକ୍ଷା କରିବା ପୁଲିସ — କାମ ।

(ଖ) ପୁଲିସ — ଦଣ୍ଡ ଦେବାର — ନାହିଁ ।

(ଗ) ପୁଲିସବାଲା ଆମ୍ଭମାନଙ୍କର — — ପର ।

(ଘ) — ଧରିବା ପାଇଁ — ସାହାଯ୍ୟ କରିବା ଉଚିତ ।

---

# ଚତୁର୍ଥ ଅଧ୍ୟାୟ

## ବିଚାର ବିଭାଗ

**ବିଚାର ବିଭାଗ କାହିଁକି ଅଛି**—ତୁମ୍ଭେମାନେ ପଞ୍ଚାୟତ ନିଶାପ କଥା ଶୁଣିଥିବ । ପୂର୍ବକାଳରେ ଗାଁରେ କଳିକଜିଆ, ମାଡ଼ଗୋଳ ହେଲେ ଗାଁର ମୁଖିଆ ମୁଖିଆ ଲୋକ ପାଞ୍ଚଜଣ ବସି ନିଷ୍ପତ୍ତି କରି ଦେଉଥିଲେ । ଲୋକମାନେ ମାଲିମକଦ୍ଦମା କରିବା ପାଇଁ କଚେରୀକୁ ଦୌଡ଼ୁ ନ ଥିଲେ । ମାଲିମକଦ୍ଦମାରେ ଖରଚ ଯେତିକି, ହଇରାଣ ବି ସେତିକି । ଆଜିକାଲି ମାଲିମକଦ୍ଦମାରେ

ଅନେକ ଲୋକ ସର୍ବସ୍ୱ ହରାଇ ବସୁଛନ୍ତି, ଜମିବାଡ଼ି ବିକ୍ରି ବା ବନ୍ଧକ ଦେଇ ମକଦ୍ଦମା ଖର୍ଚ୍ଚ ତୁଲାଉଛନ୍ତି । ଏଥିରେ ଲୋକଙ୍କ ଭିତରେ ଶତ୍ରୁଭାବ, ହିଂସାଭାବ ବଢ଼ୁଛି । ତଥାପି ଲୋକେ ମାଲିମକଦ୍ଦମାରେ ମାତିଛନ୍ତି । ଦିନକୁଦିନ ମକଦ୍ଦମାସଂଖ୍ୟା ବଢ଼ୁଛି । ଏପରି ହେବାର କାରଣ କ'ଣ ? କାରଣ ଲୋକେ ମିଳିମିଶି ଭାଇ ଭାଇ ପରି ଚଳୁ ନାହାନ୍ତି । ଆପେ ଭଲ ହେଲେ ଦୁନିଆ ଭଲ ହେବ । କିନ୍ତୁ ସମାଜରେ ସେ ଅବସ୍ଥା କାହିଁ ? ଚୋରି କରିବା, ଡକାଏତି କରିବା, ଅନ୍ୟକୁ ଠକିବା, ଲାଞ୍ଚମିଛର ଆଶ୍ରୟ ନେବା—ଏହିପରି କେତେ ପ୍ରକାର ଅନ୍ୟାୟ ଆଚରଣ ଯେ ସମାଜରେ ଦେଖାଯାଉଛି, ତାହାର କଳ୍ପନା କରି ହେବ ନାହିଁ । ଏସବୁ ଅନ୍ୟାୟର ପ୍ରତିକାର ପାଇଁ ଯେ ଦୋଷ ବା ଅପରାଧ କରୁଛି ତାହାକୁ ଉଚିତ ଦଣ୍ଡ ଦେବା ପାଇଁ ନ୍ୟାୟ ବିଚାର ଦରକାର । ନ୍ୟାୟ ବିଚାର କରିବା ପାଇଁ ବିଚାର ବିଭାଗ ରହିଅଛି । ଆପତ୍ତି ଅଭିଯୋଗ ନିରପେକ୍ଷ ଭାବରେ ଆଇନ ଅନୁସାରେ ବିଚାର କରିବା ଏହି ବିଭାଗର କାମ । ଆଇନ ଅଛି ଯେ, ଯେଉଁ ଲୋକ ଅନ୍ୟର ଜିନିଷ ଚୋରି କରିବ ସେ ତିନି ବର୍ଷଯାଏଁ ଜେଲ ବା ଜରିମାନା ଦଣ୍ଡ ପାଇବ । ଜଣକ ଘରୁ ଜିନିଷ ଚୋରି ହେଲା । ପୁଲିସ ସନ୍ଦେହ କରି ଦୁଇ ତିନି ଜଣ ଲୋକଙ୍କୁ ଚୋର ବୋଲି ଧରି ଆଣିଲେ । ଜଣେ ବୁଦ୍ଧିମାନ୍ ଆଇନ ଜାଣିଥିବା ଲୋକ ବିଚାର କରିବା ଦରକାର ଯେ, ତାଙ୍କ ଭିତରୁ ପ୍ରକୃତ ଚୋର କିଏ ? ଏହି ବିଚାର କରିବା କାମ ବିଚାରକ ବା ମାଜିଷ୍ଟ୍ରେଟ କରନ୍ତି । ମାଜିଷ୍ଟ୍ରେଟ ସାକ୍ଷ୍ୟ ପ୍ରମାଣ ନେଇ ଠିକ୍ କରି କହିଦିଅନ୍ତି ଯେ ତାଙ୍କ ଭିତରୁ ଦୋଷୀ କିଏ । ତାର ଦୋଷକୁ ଚାହିଁ ଜରିମାନା ବା ଜେଲଦଣ୍ଡ ଦିଅନ୍ତି । ଆଉ ଯେ ନିର୍ଦ୍ଦୋଷ ତାକୁ ଛାଡ଼ିଦିଅନ୍ତି ।

**ମାଜିଷ୍ଟ୍ରେରୀ ବିଭାଗ (Magistracy)**—ଯେଉଁ କାମ କଲେ ଆଇନ ଅନୁସାରେ ଦଣ୍ଡ ହୁଏ, ତାକୁ ବେ-ଆଇନ କାମ ବା ଅପରାଧ କହନ୍ତି । ଚୋରି କରିବା, ଠକିବା, ମଣିଷ ମାରିବା ଅପରାଧ ଅଟେ । ଏସବୁ ଅପରାଧର ବିଚାର କରିବା ଭାର ମାଜିଷ୍ଟ୍ରେଟଙ୍କ ଉପରେ । କଲେକ୍ଟରି କଚେରିରେ ଏ ଜାତିର ମକଦ୍ଦମାର ବିଚାର



[ ମାଜିଷ୍ଟ୍ରେଟଙ୍କ କୋର୍ଟରେ ଚୋରଙ୍କ ବିଚାର ]

ହୁଏ । କେହି କାହାଠାରୁ ଟଙ୍କା କରଜ କରି ପରିଶୋଧ ନ କଲେ, କାହାର ଜମିବାଡ଼ି ଅନ୍ୟାୟରେ ବେଦଖଲ ହେଲେ, ସେ ନାଲିସ କରି ଟଙ୍କା ନେଇପାରେ ବା ବେଦଖଲ ହୋଇଥିବା ଜମିବାଡ଼ି

ନିଜ ଦଖଲକୁ ଆଣିପାରେ । କିନ୍ତୁ ତାହା ଅପରାଧ ନୁହେଁ 'ବା ସେଥିପାଇଁ ମାଜିଷ୍ଟ୍ରେଟଙ୍କ ପାଖକୁ ମକଦ୍ଦମା ଆଣିବାକୁ ପଡ଼େନାହିଁ । ସେଥିପାଇଁ ଅଲଗା କର୍ମଚାରୀ, ମୁନ୍‌ସଫ୍ ଓ ସବ୍‌ଜଜ୍ ଥାଆନ୍ତି । ସେମାନେ ଏ ଜାତୀୟ ମକଦ୍ଦମା ବୁଝନ୍ତି । ଏସବୁ ନାଲିସକୁ ଦେୱାନୀ ମକଦ୍ଦମା କହନ୍ତି । ଦେୱାନୀ ମକଦ୍ଦମା ବିଚାର କରିବା ପାଇଁ ମୁନ୍‌ସଫ୍ ଥାଆନ୍ତି । ମୁନ୍‌ସଫ୍‌ଙ୍କ ଉପରେ ସବ୍‌ଜଜ୍, ସବ୍‌ଜଜଙ୍କ ଉପରେ ଜିଲ୍ଲା ଜଜ୍ ଅଛନ୍ତି । ମାଜିଷ୍ଟ୍ରେଟମାନେ ଫୌଜଦାରୀ ଓ ରାଜସ୍ୱ ସମ୍ବନ୍ଧୀୟ ମାଲ ମକଦ୍ଦମା ବିଚାର କରନ୍ତି । କେବଳ ମକଦ୍ଦମା ବିଚାର କରିବା ଏମାନଙ୍କର କାମ ନୁହେ । ଖଜଣା ଅସୁଲ କରିବା ମଧ୍ୟ ଏମାନଙ୍କର କାମ । ସାଧାରଣ ଶାସନ ଓ ଶୃଙ୍ଖଳା ପାଇଁ ମଧ୍ୟ ଏମାନେ ଦାୟୀ । ମାଜିଷ୍ଟ୍ରେଟ୍‌ମାନଙ୍କ କ୍ଷମତା ଅନୁସାରେ ସେମାନଙ୍କୁ ପ୍ରଥମ ଶ୍ରେଣୀ, ଦ୍ୱିତୀୟ ଶ୍ରେଣୀ ଓ ତୃତୀୟ ଶ୍ରେଣୀ ମାଜିଷ୍ଟ୍ରେଟ୍ କୁହାଯାଏ । ଏ ସମସ୍ତ ମାଜିଷ୍ଟ୍ରେଟ୍‌ଙ୍କୁ ନେଇ ମାଜିଷ୍ଟ୍ରେରୀ ବିଭାଗ ଗଠିତ ହୋଇଅଛି ।

**ମାଜିଷ୍ଟ୍ରେଟ୍‌ମାନଙ୍କ ଶ୍ରେଣୀବିଭାଗ ଓ ସେମାନଙ୍କ କାମ:—**

(୧) **ଜିଲ୍ଲା ମାଜିଷ୍ଟ୍ରେଟ୍**—ଇଂରାଜୀରେ ଏମାନଙ୍କୁ District Magistrate and Collector କିମ୍ବା District Officer କହନ୍ତି । ପ୍ରତି ଜିଲ୍ଲାର ସଦର ମହକୁମାରେ ଜଣେ ଜଣେ ଜିଲ୍ଲାମାଜିଷ୍ଟ୍ରେଟ୍ ଥାନ୍ତି । ସମ୍ବଲପୁର ଜିଲ୍ଲାରେ ଜିଲ୍ଲା ମାଜିଷ୍ଟ୍ରେଟ୍ ପରିବର୍ତ୍ତେ ଜଣେ ଡେପୁଟି କମିଶନର୍ (Deputy Commissioner) ଥାନ୍ତି । ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଡେପୁଟି କମିଶନର ଜିଲ୍ଲାର ପ୍ରଧାନ ହାକିମ । ସେମାନଙ୍କ କ୍ଷମତା ଖୁବ ବେଶି । ଡେପୁଟି କମିଶନରଙ୍କୁ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଅପେକ୍ଷା ବରଂ କିଛି ଅଧିକ କ୍ଷମତା ଦିଆଯାଇଥାଏ । ଜିଲ୍ଲା ମାଜିଷ୍ଟ୍ରେଟ୍ ଓ କଲେକ୍ଟର

ଜିଲାର ସବୁ ବିଷୟ ବୁଝନ୍ତି । ଜିଲାର ଶାନ୍ତି, ଶୃଙ୍ଖଳା, ରାଜସ୍ୱ ଆଦାୟ ଓ ସାଧାରଣ ଶାସନ ପାଇଁ ସେ ଦାୟୀ ରହନ୍ତି । ଜିଲାରେ ଅନ୍ୟାନ୍ୟ ଯେଉଁ ସବୁ ସରକାରୀ ବିଭାଗ ଅଛି, ସେସବୁ ଉପରେ ଜିଲାମାଜିଷ୍ଟ୍ରେଟ୍‌ଙ୍କର କ୍ଷମତା ଅଛି । ଜିଲାର ସ୍ୱାସ୍ଥ୍ୟ, ପୁଲିସ, ରାସ୍ତାଘାଟ, ଜଙ୍ଗଲ, ଅବକାରୀ ଇତ୍ୟାଦି ସବୁ ବିଷୟରେ ତାଙ୍କର ଅଧିକାର ଅଛି । ଏସବୁ କାର୍ଯ୍ୟ ଛଡ଼ା ସେ ବଡ଼ ବଡ଼ ମକଦ୍ଦମା ବିଚାର କରନ୍ତି । ତାଙ୍କ ତଳେ ଯେଉଁ ଡେପୁଟି ମାଜିଷ୍ଟ୍ରେଟ୍ ଓ ସବ୍-ଡେପୁଟି ମାଜିଷ୍ଟ୍ରେଟ୍‌ମାନେ ଥା'ନ୍ତି ସେମାନେ ତାଙ୍କୁ ସାହାଯ୍ୟ କରନ୍ତି । ଏମାନଙ୍କ କଥାପରେ କୁହାଯିବ ।

(୨) **ସବ୍‌ଡିଭିଜନାଲ୍ ମାଜିଷ୍ଟ୍ରେଟ୍**—ଏମାନଙ୍କୁ ମଧ୍ୟ (Sub-Divisional Officer) ସବ୍‌ଡିଭିଜନାଲ ଅଫିସର କହନ୍ତି । ଜିଲାର ଶାସନ ପାଇଁ ଯେପରି ଜିଲାମାଜିଷ୍ଟ୍ରେଟ୍ ଥାନ୍ତି, ସବ୍‌ଡିଭିଜନର ଶାସନ ପାଇଁ ପ୍ରତି ସବ୍‌ଡିଭିଜନରେ ସେହିପରି ଜଣେ ଜଣେ ସବ୍‌ଡିଭିଜନାଲ୍ ମାଜିଷ୍ଟ୍ରେଟ୍ ଥାଆନ୍ତି । ତାଙ୍କ କାମ ଠିକ୍ ଜିଲା-ମାଜିଷ୍ଟ୍ରେଟ୍‌ଙ୍କ କାମ ପରି । ଜିଲା ମାଜିଷ୍ଟ୍ରେଟ୍‌ଙ୍କର ସମୁଦାୟ ଜିଲାର ଶାସନ ଉପରେ ଅଧିକାର ଥାଏ । ସବ୍‌ଡିଭିଜନାଲ୍ ମାଜିଷ୍ଟ୍ରେଟ୍ ତାଙ୍କ ତଳିଆ କର୍ମଚାରୀ ଓ ତାଙ୍କର ସବ୍‌ଡିଭିଜନର ମାଲିକ ଅଟନ୍ତି । ସେ ଶାସନ କାର୍ଯ୍ୟରେ ଜିଲାମାଜିଷ୍ଟ୍ରେଟ୍‌ଙ୍କୁ ସାହାଯ୍ୟ କରନ୍ତି । ସବ୍-ଡିଭିଜନାଲ୍ ମାଜିଷ୍ଟ୍ରେଟ୍‌ଙ୍କୁ ସାହାଯ୍ୟ କରିବା ପାଇଁ ତାଙ୍କ ତଳେ କେତେ ଜଣ ଡେପୁଟି ମାଜିଷ୍ଟ୍ରେଟ୍ ସବ୍‌ଡେପୁଟି ମାଜିଷ୍ଟ୍ରେଟ୍ ଥାଆନ୍ତି ।

(୩) **ଡେପୁଟି ମାଜିଷ୍ଟ୍ରେଟ୍ ଓ ସବ୍‌ଡେପୁଟି ମାଜିଷ୍ଟ୍ରେଟ୍**—ଏମାନଙ୍କୁ ଯୋଗ୍ୟତା ଓ କ୍ଷମତା ଅନୁସାରେ ତିନି ଶ୍ରେଣୀରେ ବିଭକ୍ତ କରାଯାଇଅଛି । ପ୍ରଥମ ଶ୍ରେଣୀର ଡେପୁଟି ମାଜିଷ୍ଟ୍ରେଟ୍‌ମାନେ ବଡ଼ ବଡ଼ ମକଦ୍ଦମାମାନ ବିଚାର କରନ୍ତି ।

ଦ୍ୱିତୀୟ ଓ ତୃତୀୟ ଶ୍ରେଣୀର ଡେପୁଟି ମାଜିଷ୍ଟ୍ରେଟ୍‌ମାନେ ଶ୍ରେଷ୍ଠ ଶ୍ରେଷ୍ଠ ମକଦ୍ଦମା ବିଚାର କରନ୍ତି । ଏହା ଛଡ଼ା ଜିଲାରେ ବା ପ୍ରଦେଶରେ ଧୋଇ ମହାମାରୀ ହେଲେ, ଦୁର୍ଭିକ୍ଷ ପଡ଼ିଲେ ବା ଅନ୍ୟ କୌଣସି ପ୍ରକାର ବିପଦ ଆପଦ ଘଟିଲେ, ବିପନ୍ନ ଲୋକମାନଙ୍କୁ ସାହାଯ୍ୟ କରିବା ପାଇଁ ( Relief Work ) ଏମାନଙ୍କୁ ଘଟଣାସ୍ଥଳକୁ ପଠାଯାଇଥାଏ । ସବ୍‌ଡେପୁଟି ମାଜିଷ୍ଟ୍ରେଟ୍‌ମାନଙ୍କୁ କେତେକ ସାନ ସାନ ମକଦ୍ଦମା ବିଚାର କରିବାର ଭାର ଦିଆ ଯାଇଥାଏ ।

ମାଜିଷ୍ଟ୍ରେସୀ ବିଭାଗର କାର୍ଯ୍ୟ ଏହିପରି । ଏହି ବିଭାଗ ନ ଥିଲେ ଆମର କିପରି ଅସୁବିଧା ହେଉଥାନ୍ତା, ତୁମ୍ଭେମାନେ ବୁଝି ପାରୁଥିବ । ଦୋଷୀକୁ ଦଣ୍ଡ ନ ଦେଲେ ଦେଶରେ ଧନ ଜୀବନ ନିରାପଦ ରହନ୍ତା ନାହିଁ । ଚୋରି, ଡକାୟତି ଓ ଆଉ ଅନେକ ପ୍ରକାର ଅପରାଧ ଦେଶବାସୀଙ୍କୁ ଭୀତତ୍ରସ୍ତ କରି ରଖିଥାଆନ୍ତା । ଆଗରୁ ତୁମ୍ଭେମାନେ ଜାଣିଛ ଯେ ପୁଲିସଙ୍କ କାମ ହେଉଛି ଅପରାଧୀମାନଙ୍କୁ ଧରିବା । ଅପରାଧୀକୁ ଦଣ୍ଡ ଦେବାର ଅଧିକାର ପୁଲିସଙ୍କର ନାହିଁ । ପୁଲିସମାନେ ଯଦି ଦୋଷ ବିଚାର କରିବେ, କାଳେ ନ୍ୟାୟ ମିଳିବ ନାହିଁ ବୋଲି ସେମାନେ ଦୋଷ ବିଚାର କରନ୍ତି ନାହିଁ; ବିଚାରର ଭାର ମାଜିଷ୍ଟ୍ରେଟ୍‌ଙ୍କ ଉପରେ ରହିଅଛି । ଏମାନେ ସାକ୍ଷ୍ୟ ପ୍ରମାଣ ନେଇ ପ୍ରତ୍ୟେକ ମକଦ୍ଦମା ବିଚାର କରନ୍ତି ଓ ଆଇନ ଅନୁସାରେ ଦଣ୍ଡ ଦିଅନ୍ତି । ଏମାନଙ୍କ ବିଚାରରେ କୌଣସି ପକ୍ଷ ସନ୍ତୁଷ୍ଟ ନ ହେଲେ ତାଙ୍କ ଉପରିସ୍ଥ ବିଚାରକମାନଙ୍କ ପାଖରେ ଅପୀଲ କରିପାରନ୍ତି । ଏପରି ଉପରିସ୍ଥ ବିଚାରକ ହେଉଛନ୍ତି— ଜିଲ୍ଲା ଜଜ୍ ଓ ହାଇକୋର୍ଟ ଜଜ୍ । ବିଚାର କରିବା ବିଷୟରେ ହାଇକୋର୍ଟ ସମସ୍ତଙ୍କ ଉପରେ । ହାଇକୋର୍ଟର ନିଷ୍ପତ୍ତି ଶେଷ

ନିଷ୍ପତ୍ତି । ଅବଶ୍ୟ ତା ଉପରକୁ ସୁପ୍ରିମ କୋର୍ଟ ରହିଅଛି । ଓଡ଼ିଶା ପ୍ରଦେଶ ପାଇଁ ଅଲଗା ହାଇକୋର୍ଟ ନଥିଲା । ୧୯୪୮ ଖ୍ରୀଷ୍ଟାବ୍ଦରେ ଅଲଗା ହାଇକୋର୍ଟ ହୋଇଛି । ଏଥିରେ ଜ୍ଞାନୀ, ବୁଦ୍ଧିମାନ୍ ଓ ଆଇନ ଜାଣିଥିବା କେତେଜଣ ଜଜ୍ ଥାଆନ୍ତି । ଏମାନେ ବଡ଼ ବଡ଼ ମକଦ୍ଦମାର ଶେଷ ନିଷ୍ପତ୍ତି କରନ୍ତି ।

## ପ୍ରଶ୍ନ

୧ । ତୁମ ଗାଁରେ କେତେକ ଲୋକଙ୍କ ଭିତରେ କଳିକଜିଆ ଓ ମାଡ଼ଗୋଳ ହୋଇଛି । ଏ ବିବାଦ ନିଷ୍ପତ୍ତି କରିବା ପାଇଁ ତୁମେ ଗାଁବାଲାଙ୍କୁ କି ପରାମର୍ଶ ଦେବ ?

୨ । ଜଣେ ଧନୀଲୋକଙ୍କ ଘରୁ ଜଣେ ଚୋର ରାତିରେ କିଛି ଜିନିଷ ଚୋରି କରି ପଳାଉଥିବା ସମୟରେ ପଡ଼ୋଶୀ ଲୋକମାନେ ଚୋରକୁ ଧରିପକାଇଲେ । ଏହି ଚୋରକୁ କାହା ଜିମାରେ ଦିଆଯିବ ଓ ତାହାର ବିଚାର କିଏ କରିବ ?

୩ । ତୁମେ ଯେଉଁ ସବ୍‌ଡିଭିଜନରେ ବାସ କର, ସେହି ସବ୍-ଡିଭିଜନର ପ୍ରଧାନ ମାଜିଷ୍ଟ୍ରେଟ୍ ବା ଶାସକ କିଏ ? ତାହାଙ୍କର କାର୍ଯ୍ୟାବଳୀ କ'ଣ କ'ଣ ? ବିଚାରବିଭାଗ ନ ଥିଲେ ଆମର କି କି ଅସୁବିଧା ହୁଅନ୍ତା ?

## ପଞ୍ଚମ ଅଧ୍ୟାୟ

### ବାଣିଜ୍ୟ-ବ୍ୟବସାୟ ଓ ଶିଳ୍ପ

**ବାଣିଜ୍ୟ ବ୍ୟବସାୟ ଓ ଶିଳ୍ପର ଅର୍ଥ**—ଆମେ ସଂସାରରେ ବଞ୍ଚି ରହିବା ପାଇଁ ଓ ଚଳିବା ପାଇଁ ବହୁତ ପ୍ରକାର ଜିନିଷ ଦରକାର କରୁ । ବଞ୍ଚି ରହିବା ପାଇଁ ଦରକାର ବହୁତ ପ୍ରକାର ଖାଇବା ପଦାର୍ଥ—ଚାଉଳ, ଗହମ, ମୁଗ, ବିରି, ହରଡ଼, ବୁଟ, ପନିପରିବା ଫଳ, ଗୁଡ଼, ଦୁଧ, ଘିଅ, ତେଲ—ଏହିପରି ଆଉ କେତେଗୁଡ଼ିଏ ନାମ ତୁମେ ନିଜେ କୁହ । ଭଲଭାବରେ ଚଳିବା ପାଇଁ ଦରକାର—ଘରଦ୍ୱାର, ଘରର କେତେକ ସରଞ୍ଜାମ—ଖଟ, ଟେବୁଲ, ବେଞ୍ଚ, ଚୌକି ଇତ୍ୟାଦି; ଲୁଗାପଟା, ଗାଡ଼ି, ବାକ୍ସପେଟି, କଂସା ବାସନ; ଲଣ୍ଠନ, ଘଣ୍ଟା, ଝର୍ଣ୍ଣାକଲମ (Fountain pen), କଣ୍ଟାପିନ; ଛୁରୀ, ଦା, କଟୁରୀ ଆଦି ଲୁହା ହତିଆର; ତୁମ ଘରେ ଆଉ ଯେତେ ପ୍ରକାର ଦରକାରୀ ଜିନିଷ ଅଛି । ଏ ସବୁ ଜିନିଷ ଆସେ କୁଆଡ଼ୁ ? ଜଣେ ଲୋକ କ'ଣ ସବୁ ରକମ ଦରକାରୀ ଜିନିଷ ତିଆରି କରି ପାରିବ ? କଦାପି ନୁହେଁ । ତୁମର ହୁଏତ ଚାଷଜମି ଅଛି । ଧାନଚାଷ ହୁଏ; ମୁଗ, ବିରି ଚାଷ କିଛି ହୁଏ । ଭାତ ଡାଲି ଖରଚ ଏଥିରୁ ଚଳିଯାଏ । ବାକି ଜିନିଷ ପାଇଁ ତୁମକୁ ଅନ୍ୟ ଲୋକଙ୍କ ଉପରେ ନିର୍ଭର କରିବାକୁ ପଡ଼େ । ତୁମ ବ୍ୟବହାର ପାଇଁ ଏ ସବୁ ଜିନିଷ ହାଟ ବଜାରରୁ କିଣ । ଆଉ କେତେକ ଜିନିଷ ଅଛି, ଯାହା କି ତୁମ ଦେଶରେ ମିଳେ ନାହିଁ କିମ୍ବା ତିଆରି ହୁଏ ନାହିଁ । ଏଗୁଡ଼ିକ ବିଦେଶରୁ ଆସେ । ଦେଶ ମଧ୍ୟରେ ବି ସବୁ ଜିନିଷ ଏକ ସ୍ଥାନରେ ଜନ୍ମେ ନାହିଁ କି ତିଆରି

ହୁଏ ନାହିଁ । ତୁମେ ଯେଉଁ ଲୁଗା ପିନ୍ଧୁଛ, ତମ ଘରେ ଯେଉଁ କିରାସିନ ବ୍ୟବହାର ହୁଏ, ତାହା ସବୁ ଅନ୍ୟ ପ୍ରଦେଶରୁ ଆମ ପ୍ରଦେଶର ଲୋକଙ୍କ ବ୍ୟବହାର ସକାଶେ ଆସେ । ଲଣ୍ଠନ, ଝରକଲମ, ଝରକଲମର କାଳି, ଆଉ ଅନେକ ସୌଖୀନ ଜିନିଷ ଆମେରିକା, ଇଂଲଣ୍ଡ, ଜର୍ମାନୀ ପ୍ରଭୃତି ଦୂରଆପାର ଦେଶମାନଙ୍କରୁ ଆମ ଦେଶକୁ ଆସେ । କାରଣ ଆମ ଦେଶରେ ଏ ସବୁ ଜିନିଷ ଭଲ ଧରଣର ଓ ଯଥେଷ୍ଟ ପରିମାଣରେ ତିଆରି ହେବାର ବ୍ୟବସ୍ଥା ହୋଇନାହିଁ । ଆମ ଦେଶରେ ଉତ୍ପନ୍ନ ହେଉଥିବା ଘିଅ, ଝୋଟ, ଲାଖ ପ୍ରଭୃତି ଜିନିଷ ଦୂର ବିଦେଶମାନଙ୍କୁ ପଠାଯାଏ । ଏହିପରି ପ୍ରଦେଶ ଭିତରେ ଓ ପ୍ରଦେଶ ବାହାରେ, ଦେଶ ଭିତରେ ଓ ଦେଶ ବାହାରେ ଯେଉଁ ଜିନିଷପତ୍ରର କାରବାର ହୁଏ, ତାହାକୁ ସାଧୁ ଭାଷାରେ ବାଣିଜ୍ୟ କହନ୍ତି ।

ଲୋକେ ଜୀବିକା ଅର୍ଜନ କରିବା ପାଇଁ ଭିନ୍ନ ଭିନ୍ନ ପ୍ରକାର କାମ କରନ୍ତି । ଚାଷୀ ଚାଷକରେ, କୁମ୍ଭାର ହାଣ୍ଡି ଗଢ଼େ, ବଢ଼େଇ କାଠକାମ କରେ, ତନ୍ତୀ ଲୁଗା ବୁଣେ, କମାର ଲୁହାକାମ କରେ—ଏଗୁଡ଼ିକ ସେମାନଙ୍କର ପ୍ରଧାନ ବ୍ୟବସାୟ । କମାର ଲୁହାକାମ କରି କୁରାଢ଼ି, କୋଡ଼, କାଙ୍କ, ଦା ପ୍ରଭୃତି ଲୁହାର ଜିନିଷ ତିଆରି କରେ । ଏହି କାମ ସେ ନିଜ ଘରେ ବା ନିଜ ହାତରେ କରେ । ଏ ହେଲା କୁଟୀରଶିଳ୍ପ ବା ଗୃହଶିଳ୍ପ; କିନ୍ତୁ ଆଜିକାଲି ଏସବୁ କାମ ବଡ଼ ଆକାରରେ କଳକାରଖାନା-ମାନଙ୍କରେ ହୁଏ । କମାର ହାତରେ କାମ କରି ପ୍ରତିଦିନ କେତୋଟି ଜିନିଷ ତିଆରି କରି ପାରିବ ? ଆଉ ଟାଟା ଲୁହା ଓ

ଇସ୍ପାତ କାରଖାନାରେ ଦିନକରେ କେତେ ପରିମାଣ ଲୁହାର ଜିନିଷ ତିଆରି ହୋଇପାରିବ ? ଯାହା କହନ୍ତି "ସମୁଦ୍ରକୁ ଶଙ୍ଖେ



[ କୁମ୍ଭାର ଶାଳ ]

ପାଣି" । ତେଣୁ ଆଜିକାଲି ଦେଶବିଦେଶରେ କଳକାରଖାନା ସାହାଯ୍ୟରେ ପର୍ବତ ପରିମାଣ ଜିନିଷ ତିଆରି ହେଉଅଛି । ଏପ୍ରକାର ଶିଳ୍ପକୁ ଆମେ ଯନ୍ତ୍ରଶିଳ୍ପ ବା କାରଖାନାଶିଳ୍ପ କହୁଁ । ଆମ ଭାରତରେ ଏହିପରି କେତେଗୁଡ଼ିଏ ଯନ୍ତ୍ରଶିଳ୍ପର କାରଖାନା ଅଛି । ଟାଟାନଗରରେ ଲୁହାକାରଖାନା; କଲିକତା, ବମ୍ବେ ଓ ଅହମଦାବାଦରେ ଲୁଗାକଳ;

ଶ୍ରୀରାମପୁର, ଟିଟାଗଡ଼ ଓ ସମ୍ବଲପୁରର ବ୍ରଜରାଜନଗରରେ କାଗଜକଳ—ଏହିପରି ଆଉ କେତେ ପ୍ରକାର କଳକାରଖାନା ଯେ ଅଛି, ତାହାର ହିସାବ ତୁମ ଭୂଗୋଳ ବହିରୁ ଦେଖିବ ।



[ ଟାଟା ଲୁହା ଓ ଇସ୍ପାତ କାରଖାନା ]

ବର୍ତ୍ତମାନ ତୁମେ ବୁଝିପାରିବ ଯେ, ଶିଳ୍ପଦ୍ୱାରା ଯେଉଁସବୁ ଜିନିଷ ଉତ୍ପନ୍ନ ହୁଏ, ତାହା ଲୋକମାନଙ୍କର ବ୍ୟବହାର ପାଇଁ ଦେଶବିଦେଶକୁ ପଠାଯାଏ । ତାହାହେଲେ ଜାଣୁଛ ଯେ, ଜିନିଷର ଉତ୍ପାଦନକୁ ଶିଳ୍ପ କହନ୍ତି । ଆଉ ଏକ ଜାଗାରୁ ଅନ୍ୟ ଜାଗାକୁ ଜିନିଷପତ୍ର ନେବା ଆଣିବା କରି କିଣାବିକା କାରବାରକୁ ବାଣିଜ୍ୟ କହନ୍ତି । ବାଣିଜ୍ୟ ଶିଳ୍ପ ଉପରେ ଯେପରି ନିର୍ଭର କରେ, ଶିଳ୍ପ ବାଣିଜ୍ୟ ଉପରେ ସେହିପରି ନିର୍ଭର କରେ । ଜିନିଷ ଉତ୍ପନ୍ନ ହେଲେ ତାହାର କାରବାର ହୋଇପାରିବ, ଜିନିଷର କାଟ୍‌ତି ନ ହୋଇ ପାରିଲେ ତାହା ଉତ୍ପାଦନ କରିବା ଦରକାର ହେବ ନାହିଁ ।

**ଶିଳ୍ପ ଓ ବାଣିଜ୍ୟଦ୍ୱାରା ଦେଶର ଉପକାର—** ଶିଳ୍ପ ଓ ବାଣିଜ୍ୟଦ୍ୱାରା ଦେଶର ସୁଖସମୃଦ୍ଧି ବୃଦ୍ଧି ପାଏ । ଆମେରିକା, ଇଂଲଣ୍ଡ ଓ ଅନ୍ୟାନ୍ୟ ଇଉରୋପୀୟ ଦେଶମାନଙ୍କରେ ଶିଳ୍ପ ଓ ବାଣିଜ୍ୟର ପ୍ରସାର ଖୁବ୍ ବେଶି ହୋଇଥିବାରୁ ସେହି ଦେଶସବୁ ଆଜକାଲି ସବୁଠାରୁ ଉନ୍ନତ, ସଭ୍ୟ ଓ ଧନଶାଳୀ ହୋଇଅଛନ୍ତି । କଥାରେ କହନ୍ତି—"ବାଣିଜ୍ୟେ ବସତେ ଲକ୍ଷ୍ମୀଃ" ଅର୍ଥାତ୍ ବାଣିଜ୍ୟ ଦ୍ୱାରା ଧନଲାଭ ହୁଏ । ବାଣିଜ୍ୟ କରିବା ପାଇଁ ବାଣିଜ୍ୟ କରିବାର ଜିନିଷ ବା ପଣ୍ୟଦ୍ରବ୍ୟ ଦରକାର । ତେଣୁ ଦେଶରେ ପ୍ରଚୁର ପରିମାଣରେ ଜିନିଷ ଉତ୍ପନ୍ନ ହେବା ଆବଶ୍ୟକ ।

ଶିଳ୍ପ ଓ ବାଣିଜ୍ୟରେ ଆମଦେଶ ବହୁତ ପଛରେ ପଡ଼ିଛି । ପୂର୍ବେ ଆମ ଦେଶର ଲୋକେ ସୁମାତ୍ରା, ଜାଭା ପ୍ରଭୃତି ଦୂର ଦେଶ-ମାନଙ୍କୁ ଯାଇ ବାଣିଜ୍ୟ କରୁଥିଲେ । ସେକାଳରେ ଆମ ଦେଶ ଧନ ଦୌଲତରେ ପୂର୍ଣ୍ଣ ରହିଥିଲା । ସେ କାଳ ଚାଲି ଯାଇଛି । ବର୍ତ୍ତମାନ ଆମଦେଶ ଅଭାବ ଅନାଟରେ ସଙ୍କୁଚିତ । ଆମ ଦେଶରେ ଅଧିକାଂଶ ଲୋକ କୃଷି ଉପରେ ନିର୍ଭର କରନ୍ତି । କୃଷି ଦ୍ୱାରା ଉତ୍ପନ୍ନ ଶସ୍ୟ ଦେଶବାସୀଙ୍କୁ ନଅଣ୍ଟ ହେଉଛି । ଏଣୁ ଆମ ଦେଶପାଇଁ ଲକ୍ଷ ଲକ୍ଷ ମହଣ ଗହମ, ଚାଉଳ ବିଦେଶରୁ କିଣି ଆଣିବାକୁ ହେଉଛି । ଆମ ଦେଶର ଟଙ୍କାରେ ସେସବୁ ଦେଶର ଚାଷୀମାନେ ଲାଭବାନ୍ ହେଉଛନ୍ତି । ଶିଳ୍ପ ବିଷୟରେ ମଧ୍ୟ ଆମ ଦେଶର ସେହି ଅବସ୍ଥା । ଆମକୁ ପ୍ରତିବର୍ଷ କୋଟି କୋଟି ଟଙ୍କାର ଯନ୍ତ୍ରପାତି, କଳକବ୍ଜା ଓ ନିତ୍ୟବ୍ୟବହାର୍ଯ୍ୟ ପଦାର୍ଥମାନ ବିଦେଶରୁ କିଣିବାକୁ ହେଉଛି । ଏଥିରେ ଲାଭ ଉଠାଉଛନ୍ତି ବିଦେଶୀ ଉତ୍ପାଦକ ଓ ଶିଳ୍ପପତିମାନେ ଆଉ ଆମ ଦେଶରୁ ଅଜସ୍ର ଟଙ୍କା ବାହାରି ଯାଉଛି । ଦୀର୍ଘକାଳର ବିଦେଶୀ ଶାସନରେ ଆମ ଦେଶର ସବୁ ପ୍ରକାର ଶିଳ୍ପ ପଙ୍ଗୁ ହୋଇ-

ଯାଇଛି । ଆଶାର କଥା ଯେ ସ୍ୱାଧୀନତାଲାଭ ପରେ ଆମ ଦେଶରେ ଶିଳ୍ପର ପ୍ରସାର ପାଇଁ ଉପଯୁକ୍ତ ବ୍ୟବସ୍ଥା ହେଉଛି । ତୁମ୍ଭେମାନେ ବଡ଼ ହେଲା ବେଳକୁ ଦେଖିବ—ଆମ ଦେଶରେ କେତେ କଳ କାରଖାନା ବସି ଯାଇଥିବ । ଅନେକ ଲୋକ ଯେ ଅକର୍ମା ହୋଇ ବସି ପେଟ ପୋଷି ପାରୁନାହାନ୍ତି, ସେମାନଙ୍କ ପାଇଁ କାମ ଜୁଟିଯିବ; ଦେଶରେ ଦାନାକନାର ଅଭାବ ରହିବ ନାହିଁ, ଦରିଦ୍ର ଦେଶବାସୀ ଆଉ "ହା ଅନ୍ନ, ହା ଅନ୍ନ" ହକାର କରି ଆକାଶ ମେଦିନୀ କମ୍ପାଇବେ ନାହିଁ । ଈଶ୍ୱର କରନ୍ତୁ, ସେ ଶୁଭଦିନ ଶୀଘ୍ର ଆସୁ । ସ୍ୱାଧୀନ ନାଗରିକ ଭାବରେ ତୁମ୍ଭେମାନେ ସେ ସୁଖର ଭାଗୀ ହୁଅ ।

ଏ ସମ୍ପର୍କରେ ଆଉ ଗୋଟିଏ ବଡ଼ କଥା ତୁମମାନଙ୍କୁ ମନେ ରଖିବାକୁ ହେବ । ତାହା ହେଉଛି—ପ୍ରତ୍ୟେକ ଲୋକ ନିଜ ଚେଷ୍ଟାରେ ସ୍ୱାବଲମ୍ବନଶୀଳ ହେବାକୁ ଶିଖୁ, ନିଜର ନିତାନ୍ତ ଆବଶ୍ୟକୀୟ ବ୍ୟବହାର୍ଯ୍ୟ ପଦାର୍ଥ ଲାଗି ପର ଉପରେ ନିର୍ଭର ନ କରୁ । ଆଜିକାଲି ଶିଳ୍ପପତିମାନେ ବହୁମୂଲ୍ୟ ବିଳାସସାମଗ୍ରୀମାନ ବଜାରକୁ ଦେଇ ଜନସମାଜକୁ ଧନରୁ ଧନହର କରୁଛନ୍ତି । ଗରିବଙ୍କ ଝାଳବୁହା ପରିଶ୍ରମରେ ସେମାନଙ୍କର ଅର୍ଥଭଣ୍ଡାର ପୂର୍ଣ୍ଣ ହେଉଛି । ମନୁଷ୍ୟ ପ୍ରତିଦିନ ନିଜର ଗୁଜରାଣ ମେଣ୍ଟାଇବାକୁ ଯାହା ସହଜରେ ଉତ୍ପାଦନ କରିପାରେ, ତାହାର ଉପରେ ନିର୍ଭର କଲେ ଅଭାବ ରହିବ ନାହିଁ ଏବଂ ଦେଶ ଦେଶ ଓ ଜାତି ଜାତି ମଧ୍ୟରେ ତିକ୍ତ ସମ୍ପର୍କ ଉପୁଜିବ ନାହିଁ । ଏଥିପାଇଁ ମହାତ୍ମା ଗାନ୍ଧିଙ୍କ ବ୍ରତ ଥିଲା—ଦେଶରେ କୁଟୀରଶିଳ୍ପର ପ୍ରସାର ।

**ସମବାୟ ସମିତି**—ତୁମେ ଜାଣ ଯେ ସବୁ କାମରେ ଟଙ୍କା ପଇସା ଦରକାର । କଥାରେ କହନ୍ତି ପରା—"ଆଗେ ମଉସା,"

ମୂଳ ପଇସା ।” ବ୍ୟବସାୟ, ବାଣିଜ୍ୟ ଓ ଶିଳ୍ପ ପାଇଁ ଟଙ୍କା ଦରକାର । ଯେଉଁମାନଙ୍କ ପାଖରେ ଟଙ୍କା ଅଛି ସେମାନେ ବ୍ୟବସାୟ ବାଣିଜ୍ୟରେ ଟଙ୍କା ଖଟାଇ ବହୁତ ଲାଭ କରୁଛନ୍ତି । କିନ୍ତୁ ଆମ ଦେଶରେ ଖୁବ୍ କମ୍ କୋଟିପତି ଅଛନ୍ତି । ଜଣକ ପାଖରେ ବେଶି ଟଙ୍କା ନ ଥିଲେ ଦଶ ଜଣଙ୍କ ଟଙ୍କା ଏକାଠି କଲେ ବେଶ୍ ବ୍ୟବସାୟ ଚାଲିପାରିବ । ତୁମ ଗାଁରେ ହୁଏ ତ ଦୋକାନଟିଏ ନାହିଁ । ତୁମେ ଆଜ ଗୋଟିଏ ବଡ଼ ଗାଁକୁ ଯାଇ ସଉଦା କିଣୁଛ । ଏଥିରେ ତୁମର ଅସୁବିଧା ନିଶ୍ଚୟ ହେଉଥିବ । ଦୋକାନୀ ମଧ୍ୟ ଚଡ଼ା ଦରରେ ତୁମକୁ ଜିନିଷ ବିକୁଥିବ । ତୁମ ଗାଁରେ କାହାରି ପାଖରେ ଏତେ ଟଙ୍କା ନାହିଁ ଯେ ସେ ଦୋକାନଟିଏ ବସାଇ ପାରିବ । ଏସବୁ ଅସୁବିଧାର କ'ଣ କୌଣସି ପ୍ରକାର ପ୍ରତିକାର ନାହିଁ ?— ଅଛି । ତୁମ ଗାଁରେ ଅନେକ ଲୋକଙ୍କ ପାଖରେ କିଛି କିଛି ଟଙ୍କା ଥିବ । ସେମାନେ ପ୍ରତ୍ୟେକ ପାଞ୍ଚ ଟଙ୍କା, ଦଶ ଟଙ୍କା ହିସାବରେ ଚାନ୍ଦା ଦେଲେ ସମସ୍ତଙ୍କ ସମବେତ ଚେଷ୍ଟାରେ ତୁମ ଗାଁରେ ଦୋକାନଟିଏ ହୋଇପାରିବ । ଏଥିରେ ସୁବିଧା ବହୁତ । ତୁମେ ଘର ପାଖରେ ଜିନିଷ ପାଇବ । ଅଳ୍ପ ଦରରେ ଜିନିଷ କିଣିବ । କାରଣ ସାଧାରଣ ଦୋକାନୀଙ୍କ ପରି ଏ ଦୋକାନରେ ଅଧିକ ଲାଭ କରିବାର ଉଦ୍ଦେଶ୍ୟ ନଥାଏ । ଯାହା କିଛି ଲାଭ ହେବ, ତାହାକୁ ଅଂଶୀଦାର-ମାନେ ସମାନଭାବରେ ବାଣ୍ଟିନେବେ । ଏପରି ଦୋକାନକୁ ସମବାୟ ଷ୍ଟୋର୍ ବା ଦୋକାନ କହନ୍ତି ।

ସମବେତ ଚେଷ୍ଟାରେ କ'ଣ ନ ହୋଇପାରେ କ'ଣ ? ଏହାଦ୍ୱାରା ଆମ ଦେଶରେ ବଡ଼ ବଡ଼ ବ୍ୟବସାୟ ଚାଲିପାରିବ, କଳକାରଖାନା ବସିପାରିବ, ଶିଳ୍ପ ଓ ବାଣିଜ୍ୟର ପ୍ରସାର ହେବ । ଦଶଜଣ ମିଳି ପରସ୍ପର ସାହାଯ୍ୟ ଓ ସହଯୋଗରେ ଯେଉଁ ସମିତି ଗଠନ

କରାଯାଏ, ତାହାକୁ ସମବାୟ ସମିତି ବା ସହଯୋଗ ସମିତି କହନ୍ତି । ସରକାର ଏହି ସମିତିମାନଙ୍କୁ ଉପଯୁକ୍ତ ଅର୍ଥ ସାହାଯ୍ୟ ଦିଅନ୍ତି । ତୁମ ଗାଁରେ ଗୋଟିଏ ସହଯୋଗ ସମିତି ଖୋଲିବାକୁ ଇଚ୍ଛା କଲେ ପ୍ରଥମେ ଖୁବ୍ କମ୍‌ରେ ଦଶଜଣ ଲୋକ ମିଳି ସହଯୋଗ



[ ଗ୍ରାମରେ ସମବାୟ ଦୋକାନ ]

ସମିତିର ରେଜିଷ୍ଟ୍ରାରଙ୍କ ପାଖକୁ ଦରଖାସ୍ତ କରିବାକୁ ହେବ ରେଜିଷ୍ଟ୍ରାରଙ୍କ ମଞ୍ଜୁରି ପାଇଲେ ସମିତି ଖୋଲି ହେବ । ସମିତିର କେତେଗୁଡ଼ିଏ ଆଇନ କାନୁନ ଅଛି । ସମିତିର ସଭ୍ୟମାନଙ୍କୁ ଏହି ଆଇନ-କାନୁନ ମାନ ଚଳିବାକୁ ହୁଏ । ସରକାର ସମିତିକୁ କରଜ ସୂତ୍ରରେ ଅର୍ଥ ସାହାଯ୍ୟ ଦିଅନ୍ତି । ସମିତିର ନିୟମ ଅନୁସାରେ ଏହି କରଜ ଟଙ୍କା ଶୁଝିବାକୁ ହୁଏ ।

ସମବାୟ-ସମିତିର ମୂଳସୂତ୍ର ହେଉଛି ଏକତା ଓ ପରସ୍ପର ମଧ୍ୟରେ ସଦ୍‌ଭାବ ଓ ସହଯୋଗ । ଏଥିପାଇଁ ସମିତିର ପ୍ରତ୍ୟେକ ସଭ୍ୟ ସଚ୍ଚା ଓ ସାଧୁ ପ୍ରକୃତିର ଲୋକ ହେବା ଉଚିତ । ଆଜିକାଲି ସ୍କୁଲପିଲାମାନେ ସମବାୟ-ସମିତିର ସୁବିଧା ବୁଝି ସ୍କୁଲରେ ସମବାୟ ଷ୍ଟୋର ବା ଦୋକାନ ଖୋଲୁଛନ୍ତି । ତୁମ ସ୍କୁଲରେ ଏପରି ଷ୍ଟୋର ନଥିଲେ ଶୀଘ୍ର ଗୋଟିଏ ଷ୍ଟୋର ଖୋଲିବାକୁ ଚେଷ୍ଟା କର । ଏଥିରେ ତୁମର ପାଠ୍ୟପୁସ୍ତକ, କାଗଜ, କଲମ, କାଳି, ପେନ୍‌ସିଲ ପ୍ରଭୃତି ସବୁ ପ୍ରକାର ଦରକାରୀ ଜିନିଷ ରଖିଲେ ତୁମର ବିଶେଷ ସୁବିଧା ହେବ । ହାତ ପାଖରେ ଏ ସବୁ ଜିନିଷ ପାଇବ, ଶସ୍ତାରେ ଜିନିଷ କିଣିବ, ପୁଣି ଟଙ୍କା ଉପରେ ଲାଭ ପାଇବ; ତା'ଛଡ଼ା ତୁମମାନଙ୍କ ମଧ୍ୟରେ ଏକତା ଓ ସହଯୋଗ ଭାବ ବଢ଼ିବ । ଏପରି ସମବାୟ ଦୋକାନ ତୁମ ସ୍କୁଲର ଗୌରବର ବିଷୟ ହେବ ।

**ସେଭିଙ୍ଗ୍‌ସ୍ ବ୍ୟାଙ୍କ୍** (Savings Bank)—ତୁମେ ପୋଷ୍ଟ ଅଫିସ ସେଭିଙ୍ଗ୍‌ସ୍ ବ୍ୟାଙ୍କ୍ କଥା ଆଗରୁ ଜାଣିଛ । ଟଙ୍କା ଜମା ରଖିବା ପାଇଁ ଆଉ ଅନେକଗୁଡ଼ିଏ ବ୍ୟାଙ୍କ୍ ଅଛି । ଏହି ବ୍ୟାଙ୍କ୍-ଗୁଡ଼ିକ କଥା ବର୍ତ୍ତମାନ କୁହାଯିବ । ଭବିଷ୍ୟତ୍ ପାଇଁ ସମସ୍ତ କିଛି କିଛି ଟଙ୍କା ସଞ୍ଚୟ କରି ରଖନ୍ତି । ବିବାହ, ବ୍ରତ ବା ଦୁର୍ଦ୍ଦିନ ପଡ଼ିଲେ ଏହି ସଞ୍ଚିତ ଟଙ୍କା ବହୁତ କାମ ଦିଏ । ପାଖରେ ଟଙ୍କା ସାଇତି ରଖିବା ଆଦୌ ନିରାପଦ ନୁହେଁ । ଚୋର, ତସ୍କର ଭୟ ତ ଅଛି; ତା'ଛଡ଼ା ବାଜେ ଖର୍ଚ୍ଚରେ ଟଙ୍କା ଉଡ଼ିଯିବ । ସବୁଠାରୁ ଭଲ ଉପାୟ ହେଉଛି ବ୍ୟାଙ୍କ୍‌ରେ ଟଙ୍କା ଜମା କରି ରଖିବା । ଟଙ୍କା ନିରାପଦ ରହିବ, ପୁଣି ମୂଳଧନ ଉପରେ ସୁଧ ମିଳିବ; ଦରକାର ବେଳେ ଟଙ୍କା ଉଠାଇ ଆଣି ଖରଚ କରି ହେବ । ଏ ତ ଗଲା ଅଳ୍ପ

ଟଙ୍କା କଥା । ଯେଉଁମାନେ ବଡ଼ ବଡ଼ ବ୍ୟବସାୟୀ ବା ବଡ଼ କମ୍ପାନୀ, ସେମାନଙ୍କର ଦିନକୁ ହଜାର ହଜାର ଟଙ୍କାର କାରବାର । ଏତେ ଟଙ୍କା ପାଖରେ ରଖିବା ଆଦୌ ନିରାପଦ ନୁହେ । ସେଥିପାଇଁ ସେମାନେ ବ୍ୟାଙ୍କ୍‌ରେ ଟଙ୍କା ଜମା ରଖିଦିଅନ୍ତି । ବ୍ୟାଙ୍କ୍‌ବାଲାମାନେ ଟଙ୍କା ଜମା ରଖି ସେହି ଟଙ୍କାକୁ ବାଣିଜ୍ୟ ବ୍ୟବସାୟରେ ଲଗାନ୍ତି । ଟଙ୍କାକୁ ଅଚଳ ଅବସ୍ଥାରେ ସମ୍ପାଦ ରଖିଦେଲେ ସେମାନେ ଲାଭ ପାଇବେ କୁଆଡ଼ୁ ? ତାଙ୍କ କାରବାର ଚଳିବ କପରି ? ବ୍ୟାଙ୍କବାଲାମାନେ ଟଙ୍କା ଖଟେଇ ବେଶ୍ ଲାଭ ଉଠାନ୍ତି ।

ବ୍ୟାଙ୍କ୍ କାରବାରରେ ଆଉ ଗୋଟିଏ ସୁବିଧା ଅଛି । ବହୁତ ଟଙ୍କାର କାରବାର କଲେ ବହୁତ ଟଙ୍କା ପଇସା ନେବା ଆଣିବାକୁ ପଡ଼େ । ସେଥିରେ ଖୁବ୍ ଅସୁବିଧା ହୁଏ । ସେଥିପାଇଁ ବ୍ୟାଙ୍କ୍ ସାହାଯ୍ୟରେ ଆଜିକାଲି ଖାଲି ହିସାବରେ ବ୍ୟବସାୟ ଚଳେ । ମନେକର, ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆରେ (State Bank of India) ମୋର ଟଙ୍କା ଜମା ଅଛି । ଏହା ଗୋଟିଏ ବଡ଼ ବ୍ୟାଙ୍କ୍ । ଏହାର ଗୋଟିଏ ଅଫିସ କଟକରେ, ଆଉ ଗୋଟିଏ ଅଫିସ କଲିକତାରେ । ମୁଁ କଟକ ଅଫିସରେ ଟଙ୍କା ଜମା ରଖିଛି । ମୁଁ କଲିକତାରେ ଜଣେ ବ୍ୟବସାୟୀ ପାଖରୁ ଟ ୧୦,୦୦୦ରେ ଜିନିଷ କିଣିଲି । ଏତେ ଟଙ୍କା ମନିଅର୍ଡ଼ର କରି କିମ୍ବା ଅନ୍ୟ କୌଣସି ଉପାୟରେ ପଠାଇବା ସହଜ ନୁହେଁ । ମୁଁ କରିବି କ'ଣ ନା, ବ୍ୟବସାୟୀ ପାଖକୁ ଦଶହଜାର ଟଙ୍କାର ଗୋଟିଏ ବ୍ୟାଙ୍କ୍ ଚେକ୍ ପଠାଇଦେବି । ବ୍ୟାଙ୍କ୍‌ରେ ମୋର ଟଙ୍କା ଜମା ଥିବାରୁ ବ୍ୟାଙ୍କ୍ ମୋତେ ଗୋଟିଏ ଚେକ୍ ବହି ଦେଇଥାଏ । ଚେକ୍‌ରେ ମୁଁ ଲେଖି ଦେବି ଯେ ବ୍ୟାଙ୍କ୍ ମୋ ପାଇଁ ସେ ବ୍ୟବସାୟୀକୁ ଦଶ ହଜାର

ଟଙ୍କା ଦେବ । କଟକ ଅଫିସ ସେ ଚେକ୍ ପାଇ ମୋ ଜମା ଟଙ୍କାରୁ ଦଶ ହଜାର କାଟି ନେଇ କଲିକତା ଅଫିସକୁ ଲେଖି ଜଣାଇ ଦେବ । କଲିକତା ଅଫିସରେ ସେହି ବ୍ୟବସାୟୀଙ୍କ ଜମା ଟଙ୍କାରେ ଦଶ ହଜାର ଟଙ୍କା ବେଶି ଜମା ହେଲା ବୋଲି ଲେଖାଯିବ । ଏହିପରି ଖାଲି ହିସାବରେ ଦିଆନିଆ ହୋଇଯିବ । ବିଦେଶୀ ବ୍ୟବସାୟୀଙ୍କ ସହିତ ମଧ୍ୟ ଏହିପରି ବ୍ୟାଙ୍କ୍ କାରବାର ଚଳେ । ଏହା ସୁବିଧାର କଥା ନୁହେଁ କି ?

ଲୋକେ ଆଜିକାଲି ବ୍ୟାଙ୍କ୍ କାରବାରର ସୁବିଧା ଜାଣି-ଗଲେଣି । ପ୍ରତି ବଡ଼ ସହରରେ ଦେଖିବ, କେତେଗୁଡ଼ିଏ ବ୍ୟାଙ୍କ୍ ଅଛି । ଖାଲି କଟକ ସହରରେ ଥିବା କେତେଗୋଟା ବଡ଼ ବ୍ୟାଙ୍କ୍‌ର ନାମ ହେଉଛି—ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ (State Bank of India), ଇଉନାଇଟେଡ଼୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ (United Bank of India), ଇଉନାଇଟେଡ଼୍ କମର୍ସିଆଲ୍ ବ୍ୟାଙ୍କ୍ (United Commercial Bank), ଷ୍ଟେଟ୍ କୋ-ଅପରେଟିଭ୍ ବ୍ୟାଙ୍କ୍ (State Co-operative Bank), ପଞ୍ଜାବ ନେସନ୍ୟାଲ୍ ବ୍ୟାଙ୍କ୍ (Punjab National Bank) ଇତ୍ୟାଦି । ଡାକଘର ସେଭିଙ୍ଗସ୍ ବ୍ୟାଙ୍କ୍‌ରେ ଟଙ୍କା ଜମା ରଖିଲେ ଯେପରି ପାଶ୍ ବୁକ୍ (Pass Book) ମିଳେ ଅନ୍ୟାନ୍ୟ ବ୍ୟାଙ୍କ୍‌ରେ ମଧ୍ୟ ସେହିପରି ଟଙ୍କା ଜମା ରଖି ପାଶ୍ ବହି ଦେବାର ବ୍ୟବସ୍ଥା ଅଛି ।

## ପ୍ରଶ୍ନ

୧ । ଶିଳ୍ପ ଓ ବାଣିଜ୍ୟ ମଧ୍ୟରେ ପ୍ରଭେଦ କ'ଣ ?

୨ । ଶିଳ୍ପ ଓ ବାଣିଜ୍ୟଦ୍ୱାରା ଦେଶର କି ଉପକାର ହୁଏ ?

୩ । ତୁମେ ଯେଉଁସବୁ ଜିନିଷ ଖାଅ ଓ ଯେଉଁସବୁ ଜିନିଷ ବ୍ୟବହାର କର, ସେ ସବୁର ଗୋଟିଏ ଗୋଟିଏ ତାଲିକା କର । ପ୍ରତି ଜିନିଷ କେଉଁଠାରୁ ପାଅ, ସେହି ଜିନିଷ ପାଖେ ପାଖେ ଲେଖ ।

୪ । (କ) ଯନ୍ତ୍ରଶିଳ୍ପଦ୍ୱାରା ଉତ୍ପନ୍ନ ଦଶଗୋଟି ଜିନିଷର ନାମ କୁହ ।
(ଖ) କୁଟୀରଶିଳ୍ପଦ୍ୱାରା ଉତ୍ପନ୍ନ ପାଞ୍ଚଗୋଟି ଜିନିଷର ନାମ କୁହ ।

୫ । ମହାତ୍ମା ଗାନ୍ଧି କୁଟୀରଶିଳ୍ପର ପକ୍ଷପାତୀ ଥିଲେ କାହିଁକି ?

୬ । ସମବାୟ-ସମିତିଦ୍ୱାରା ଆମ ଦେଶର କି ଉପକାର ହେଉଛି ?

୭ । ତୁମ ବିଦ୍ୟାଳୟରେ ଗୋଟିଏ ସମବାୟ ଷ୍ଟୋର ଖୋଲିବା ପାଇଁ କି ପ୍ରକାର ଚେଷ୍ଟା କରିବ ? ଏହାଦ୍ୱାରା ତୁମର କି ସୁବିଧା ହେବ ?

୮ । ବ୍ୟାଙ୍କ୍ କାରବାରର ସୁବିଧା କ'ଣ ?

୯ । ତଳେ ଯେଉଁ ବାକ୍ୟଗୁଡ଼ିକ ଦିଆ ଯାଇଅଛି ତହିଁରେ ଥିବା ଶୂନ୍ୟସ୍ଥାନମାନ ଉପଯୁକ୍ତ ଶବ୍ଦଦ୍ୱାରା ପୂରଣ କର :—

(କ) ଦେଶର—ଶିଳ୍ପର—ଯେତେ—ହେବ,—ସେତେ—ହେବ ।

(ଖ) — ଆମ ଦେଶରେ ଜୀବିକା — ପ୍ରଧାନ ଉପାୟ ।

(ଗ) ବାଣିଜ୍ୟଦ୍ୱାରା — — ହୁଏ ।

(ଘ) — ଓ ପରସ୍ପର ମଧ୍ୟରେ —ସମବାୟ ମୂଳସୂତ୍ର ଅଟେ ।

(ଙ) — ଟଙ୍କା — ରଖିଲେ ତାହା — ରହିବ ।

(ଚ) ଟଙ୍କା — — ବଢ଼େ ।

---

# ଷଷ୍ଠ ଅଧ୍ୟାୟ

## ଋଣ

**ଲୋକେ ଋଣ କରନ୍ତି କାହିଁକି** ?—ଆମ ଦେଶର ଅଧିକାଂଶ ଲୋକ ଗରିବ; ପେଟ ପୂରାଇ ଗଣ୍ଡେ ଖାଇବାକୁ ପାଆନ୍ତି ନାହିଁ । ଅଭାବ ସେମାନଙ୍କର ଚିର ସହଚର । ଅଭାବରେ ପଡ଼ିଲେ ମଣିଷର ସ୍ୱଭାବ ନଷ୍ଟ ହୁଏ । ସେତେବେଳେ ମଣିଷ ଅନ୍ୟଠାରୁ ଧାର କରିବାକୁ ବାଧ୍ୟ ହୁଏ । ଏପରି ହାତ ଉଧାର କରି ଗରିବ ଲୋକେ ନିଜର ଗୁଜରାଣ ମେଣ୍ଟାଇ ନଅନ୍ତି । ଏପରି ଅଳ୍ପ ଧାର କରି ପରେ ଶୁଝିଦେବା ବେଶି ଦୋଷର କାମ ନୁହେଁ । କିନ୍ତୁ ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନଙ୍କର ଆୟ ଟିକିଏ ଅଧିକ, ଅଥଚ ଆୟକୁ ଚାହିଁ ଖରଚ କରନ୍ତି ନାହିଁ । ଯାହାର ମାସକୁ ଆୟ ଟ ୧୦୦ଙ୍କା, ସେ ଖରଚ କରିବ କେତେ ? ତାହାର ୮୦।୯୦ ଟଙ୍କା ଖରଚ କରି ସମୟ ଅସମୟ ପାଇଁ ୧୦।୨୦ ଟଙ୍କା ବଞ୍ଚାଇ ରଖିବା ଉଚିତ ନୁହେଁ କି ? କିନ୍ତୁ ଅନେକ ଲୋକ ବେହିସାବୀ ଖର୍ଚ୍ଚ କରିପକାନ୍ତି । ଆୟ ତୁଳନାରେ ଖର୍ଚ୍ଚ ଅଧିକ ହୋଇଯାଏ । ତା'ଛଡ଼ା ଅନେକ ଲୋକଙ୍କର 'ଲୋକଦେଖାଣିଆ ସ୍ୱଭାବ ଅଛି । ସେମାନେ ବିବାହ, ବ୍ରତ, ଶ୍ରାଦ୍ଧ, ଶୁଦ୍ଧିକ୍ରିୟା ଆଦିରେ ବହୁତ ଖର୍ଚ୍ଚ କରିପକାନ୍ତି । ପୁଣି ଘରେ କାହାର ବେମାର ଆରାମ ହେଲେ ଡାକ୍ତର ବଇଦ ଡାକିବା ପାଇଁ, ଔଷଧ-ପତ୍ର କିଣିବା ପାଇଁ ଖର୍ଚ୍ଚ କରିବାକୁ ପଡ଼େ । ଏସବୁ ଖର୍ଚ୍ଚ ତୁଲେଇବା ପାଇଁ ସଞ୍ଚିତ ଟଙ୍କା ନ ଥିଲେ ଲୋକେ ନାଚାର ହୋଇ ଋଣ କରନ୍ତି ।

**ଋଣ କରିବାର ଅପକାରିତା**—ଋଣ କରି ଟଙ୍କା ଆଣିବାକୁ ସୁଖ ଲାଗେ ସତ, କିନ୍ତୁ ଋଣ ଶୁଝିବା କଷ୍ଟକର । ତୁମେ ଯାଇ ଗାଁ ମହାଜନ ପାଖରୁ ଟଙ୍କା କରଜ ଆଣିଲ । ମହାଜନ ଦଲିଲ କରିନେଇ ଟଙ୍କା କରଜ ଦେଲା । ମୂଳ କାଳାନ୍ତର ମିଶି ବର୍ଷକୁ ବର୍ଷ ଟଙ୍କା ବଢ଼ି ଚାଲିଲା । କରଜ ପରିଶୋଧ କରିବାକୁ ତୁମର ସମ୍ବଳ ନାହିଁ । କରଜ ଉପରେ ପୁଣି କରଜ କଲ । ଜମିବାଡ଼ି ଯାହା କିଛି ତାହାସବୁ ବନ୍ଧକ ଦେଲ । ମହାଜନ କ'ଣ ତା ପାଉଣା ଛାଡ଼ିଦେବାର ଲୋକ ? ଏହିପରି ସୁଯୋଗକୁ ସେ ଚାହିଁ ବସିଥାଏ । ତୁମ ନାମରେ ମକଦ୍ଦମା କରି ତୁମର ଜମିବାଡ଼ି ସବୁ କୋରଗ କରିନେଲା । ତୁମେ ସବୁ ହରାଇ ଦାଣ୍ଡର ଭିକାରି ହେଲ । ମାଛ ଯେପରି ଜାଲରେ ପଡ଼ି ଛଟପଟ ହୁଏ, ତୁମେ ସେହିପରି ଋଣଜାଲରେ ଛନ୍ଦିହୋଇ ଧନ୍ଦି ହେଲ ।

ସବୁ ଧର୍ମଶାସ୍ତ୍ରରେ ଅଛି—ଋଣ କରିବା ମହାପାପ । ଯେଉଁ ଲୋକ ଋଣୀ ହୋଇ ମରେ, ତାହାର ଆତ୍ମାର ସଦ୍‌ଗତି ହୁଏ ନାହିଁ । ମହାଭାରତରେ ଅଛି—ପାଣ୍ଡବ ପାଞ୍ଚଭାଇ ବନବାସ କରି ବୁଲୁଥିବାବେଳେ ଥରେ ସେମାନଙ୍କୁ ଶୋଷ ହେଲା । ଭୀମ ତ ତାଙ୍କ ଭିତରେ ସବୁଠୁ ବଳୁଆ । ସେ କହିଲେ, "ତମେ ସମସ୍ତେ ଏକାବେଳକେ ଯିବ କାହିଁକି ? ତୁମେସବୁ ଏହିଠାରେ ଥାଅ, ମୁଁ ଯାଉଛି ପାଣି ନେଇ ଆସିବି ।" ଭୀମ ଯାଇ ପହଞ୍ଚିଲେ ଗୋଟିଏ ପୋଖରୀ କୂଳରେ । ସେଠି ଗୋଟିଏ ବଗ ବସିଥାଏ । ସେ କହିଲା, "ତୁମେ ମୋର କେତୋଟି ପ୍ରଶ୍ନର ଠିକ୍ ଉତ୍ତର ଯଦି ଦେଇପାରିବ, ତେବେ ଏ ପୋଖରୀରୁ ପାଣି ନେବ । ଉତ୍ତର ଦେଇ ନ ପାରିଲେ, ଏହିଠାରେ ପଞ୍ଚତ୍ୱ ପାଇବ ।" ଭୀମ ଉତ୍ତର

ଦେଇନପାରି ପାଣି ଆଣିବାକୁ ଯିବାରୁ ସେଠାରେ ମରି ପଡ଼ିଲେ । ତା'ପରେ ପରେ ଅର୍ଜ୍ଜୁନ, ନକୁଳ, ସହଦେବ ଆସିଲେ । ସେମାନେ ବି ସେହିପରି ସେଠାରେ ମରି ପଡ଼ିଲେ । ଶେଷକୁ ଆସିଲେ ଧର୍ମରାଜ ଯୁଧିଷ୍ଠିର । ତାଙ୍କୁ କେଉଁ ପ୍ରଶ୍ନର ଉତ୍ତର ଅଜଣା ? ବଗ କହିଲା, "ହେ ଧର୍ମରାଜ ! ମୋର ପ୍ରଶ୍ନ ଉତ୍ତର ଆଗ ଦିଅ । କହ ଦେଖି, ଏ ସଂସାରରେ ସୁଖୀ କିଏ ?" ଯୁଧିଷ୍ଠିର ଉତ୍ତର ଦେଲେ, "ହେ ବାରିଚର ! ଶୁଣ—ଯେଉଁ ଲୋକ ଦିବସର ଅଷ୍ଟମ ଭାଗରେ (ପ୍ରାୟ ଦିନ ଦୁଇଘଣ୍ଟା ସମୟରେ ) ଶାକାନ୍ନ ପାକ କରି ଭୋଜନ କରେ, ଯେଉଁ ଲୋକ ଅଋଣୀ ଓ ଯେଉଁ ଲୋକ ଅପ୍ରବାସୀ (ବିଦେଶରେ ରହେ ନାହିଁ), ସେହି ଲୋକ ଏ ସଂସାରରେ ସୁଖୀ ।" ବଗ ଆଉ ଯେଉଁ ପ୍ରଶ୍ନମାନ ପଚାରିଲା, ଯୁଧିଷ୍ଠିର ସେ ସବୁର ମଧ୍ୟ ଠିକ୍ ଠିକ୍ ଉତ୍ତର ଦେଇଦେଲେ । ବଗ ଭାରି ଖୁସି ହୋଇ ଯୁଧିଷ୍ଠିରଙ୍କ ଚାରିଭାଇଙ୍କୁ ଜୀଆଇଁ ଦେଲା । ସମସ୍ତେ ମନ ଇଚ୍ଛା ପାଣି ପିଇ ଫେରିଲେ । ଏ ବଗଟି କିଏ କହିଲ ? ଏ ଲମ୍ବାଥଣ୍ଟିଆ ମାଛଖିଆ ବଗ ନୁହେଁ । ଏ ହେଉଛନ୍ତି ଛଦ୍ମବେଶଧାରୀ ଧର୍ମ । ଏ ଗପଟିରୁ ତୁମେ ଜାଣିଲ ଯେ ଋଣୀ ଲୋକ ସୁଖୀ ହୋଇ ନପାରେ । ଋଣ ନ ଶୁଝିବା ପର୍ଯ୍ୟନ୍ତ ତାହାର ମନରେ ଶାନ୍ତି ନଥାଏ ।

**ଋଣରୁ ରକ୍ଷା ପାଇବାର ଉପାୟ**—କରଜ କରିବାରେ କିପରି ବିପଦ ତୁମେ ଜାଣିଲ । ଆଗରୁ ସାବଧାନ ରହିଲେ ଏ ବିପଦରୁ ରକ୍ଷା ମିଳିବ । ଆୟରୁ ଅଳ୍ପ ବ୍ୟୟ କରି ନିୟମିତ ଭାବରେ ସଞ୍ଚୟ କରିବାର ଅଭ୍ୟାସ ଥିବା ଉଚିତ । ପିମ୍ପୁଡ଼ି ଓ ମହୁମାଛି ପରି କ୍ଷୁଦ୍ରଜୀବଙ୍କର ସଞ୍ଚୟ କରିବା ଗୁଣ ତୁମ ଆଖି ଆଗରେ ଦେଖୁଛ । ମଣିଷ କ'ଣ ତାଙ୍କଠାରୁ ବି ହୀନ ? ପେଟରେ

ଓଦାକନା ଦେଇ ସଞ୍ଚୟ କରିବାକୁ କେହି କହୁ ନାହିଁ । ମିତବ୍ୟୟୀ ହେଲେ ସବୁ ଖରଚ ସୁରୁଖୁରୁରେ ଚଳିଯିବ, ଅଭାବ ପଡ଼ିବ ନାହିଁ, କରଜ କରିବାର ଦରକାର ହେବ ନାହିଁ । ଅନେକ ଲୋକ ଧାରରେ ଜିନିଷ କିଣନ୍ତି । ଏ ବଡ଼ ମନ୍ଦ ଅଭ୍ୟାସ । ଥରକୁ ଥର ଧାରରେ ଜିନିଷ କିଣିଲେ ଦୋକାନୀର ଅନେକ ଟଙ୍କା ପାଉଣା ହୋଇଯାଏ । ଏତେ ଟଙ୍କା ଦେବାକୁ ତୁମର ଶକ୍ତି ନଥାଏ । ଟଙ୍କା ପାଇଁ ଦୋକାନୀ ଥରକୁଥର ତାଗିଦ୍ କରୁଥାଏ । ଦୋକାନୀକୁ ମୁହଁ ଦେଖାଇବାକୁ ଲଜ୍ଜ ମାଡ଼େ । ଏ. ମଧ୍ୟ ଗୋଟିଏ ପ୍ରକାର ଋଣ । ଦୋକାନୀର ଟଙ୍କା ନ ଦେବା ପର୍ଯ୍ୟନ୍ତ ତୁମେ ତା'ଠାରେ ଧାରୁଆ ହୋଇ ରହିଥାଅ । ନଗଦ ପଇସା ଦେଇ ଜିନିଷ କିଣିବା ବୁଦ୍ଧିମାନ୍ ଲୋକର କାମ । ତା' ହେଲେ ଆଉ କୌଣସି ରକମ ଝଞ୍ଜଟ୍ ରହିବ ନାହିଁ ।

ତୁମେ ଯାହା ସଞ୍ଚୟ କରିବ ତାହାକୁ ନିରାପଦ ରଖିବାପାଇଁ କ'ଣ କରିବ, ଆଗରୁ କୁହାଯାଇଛି । ସଞ୍ଚିତ ଟଙ୍କା ଡାକଘରର ସେଭିଙ୍ଗ୍ସ୍ ବ୍ୟାଙ୍କ୍‌ରେ, ଅନ୍ୟାନ୍ୟ ବ୍ୟାଙ୍କ୍‌ରେ ବା ଜୀବନବୀମା କମ୍ପାନୀରେ ଜମା ରଖିବା ନିରାପଦ ।

## ପ୍ରଶ୍ନ

୧ । ଲୋକେ ଋଣ କରନ୍ତି କାହିଁକି ?

୨ । ଋଣ ନ କରିବା ପାଇଁ ତୁମେ ଆଗରୁ କିପରି ପ୍ରସ୍ତୁତ ହେବ ?

୩ । ଋଣ କରିବାର ଅପକାରିତା କ'ଣ ?

## ସପ୍ତମ ଅଧ୍ୟାୟ

### କର ଓ ମାସୁଲ

**ସରକାର କର ଧାର୍ଯ୍ୟ କରନ୍ତି କାହିଁକି ?**—ତୁମ ବାପା ଓ ବଡ଼ଭାଇ ଗୃହବାସ କରି ଓ ଗୃହକର୍ମ କରି ରୋଜଗାର କରନ୍ତି । ସେ ରୋଜଗାରରୁ ତୁମ ଘରଖର୍ଚ୍ଚ ଚଳେ । ତୁମ ଘରେ କେହି ରୋଜଗାର କରୁ ନ ଥିଲେ ତୁମ ପରିବାର ଚଳନ୍ତା ନାହିଁ । ବିଶେଷତଃ ତୁମେ ପାଠ ପଢ଼ିବା ପାଇଁ ଟଙ୍କା ପାଆନ୍ତ ନାହିଁ । ଦେହ ଅସୁସ୍ଥ ହେଲେ ଟୋପାଏ ଔଷଧ ମିଳନ୍ତା ନାହିଁ ବା ତୁମର ଘର ମରାମତି ଇତ୍ୟାଦି ହୋଇପାରନ୍ତା ନାହିଁ । ସରକାର ଗୋଟିଏ ବଡ଼ ପରିବାର ଭଳି । ସରକାର ଲୋକଙ୍କ ସୁବିଧା ସକାଶେ ଶାସନ କାର୍ଯ୍ୟ ଚଳାନ୍ତି । ଲୋକଙ୍କ ଶିକ୍ଷା ଓ ସୁବିଧା ପାଇଁ ସରକାର ସ୍କୁଲ୍, କଲେଜ, ରାସ୍ତାଘାଟ, ଡାକ୍ତରଖାନା ପ୍ରଭୃତି ଖୋଲୁଛନ୍ତି । ଦେଶରେ ଆଇନ ଶୃଙ୍ଖଳା ରକ୍ଷା କରିବା ପାଇଁ ବିଚାର ବିଭାଗ, ପୁଲିସ ବିଭାଗ, ଦେଶକୁ ଶତ୍ରୁ ହାତରୁ ରକ୍ଷା କରିବା ପାଇଁ ସୈନ୍ୟ ବିଭାଗ ରହିଅଛି । ଏସବୁ କାମ ଚଳାଇବା ପାଇଁ ବହୁତ ଟଙ୍କା ଦରକାର । ସରକାର ଏତେ ଟଙ୍କା ଆଣିବେ କୁଆଡୁ ? ଲୋକଙ୍କ ଉପରେ କର ବସାଇ ସରକାର ଏ ଟଙ୍କା ଆଦାୟ କରନ୍ତି ।

**ସରକାରଙ୍କ କରଧାର୍ଯ୍ୟ କରିବା ନୀତି**—ସରକାର ଦୁଇପ୍ରକାର କର ଧାର୍ଯ୍ୟ କରନ୍ତି । ଗୋଟିଏ ପ୍ରକାର କରରେ କର ଦେବା ଲୋକ ଜାଣିପାରେ ଯେ ସରକାରଙ୍କୁ କର ଦେଉଛି । ଜମି ଉପରେ ଖଜଣା ଧାର୍ଯ୍ୟ କରାଯାଏ । ଯାହାର ଯେତେ ଜମି ସେ ସେତେ ଖଜଣା ଦିଏ । ସେ ଜାଣିପାରେ ତା'କୁ କେତେ ଖଜଣା ଦେବାକୁ ହେଉଛି । ଆୟକର ଏପରି ବସେ

ଯେ, ଯାହାର ଯେତେ ଆୟ ତାହାର ଉପରେ କର ହିସାବ କରି ତାକୁ ଦେବାକୁ ପଡ଼େ । ମଦ, ଗଞ୍ଜାଇ, ଅଫିମ ପ୍ରଭୃତି ନିଶାଦ୍ରବ୍ୟ ଉପରେ ସରକାର ଯେଉଁ କର ବସାନ୍ତି ତାହା ଜଣାପଡ଼େ ନାହିଁ । ଦୋକାନୀ ବା ବ୍ୟବସାୟୀମାନେ ପ୍ରଥମେ ଏ କର ସରକାରଙ୍କୁ ଦେଇ ଦିଅନ୍ତି । ତା' ପରେ ସେମାନେ ବିକ୍ରି କରିବା ଜିନିଷର ଦାମ୍ ଉପରେ ତାକୁ ଭିଡ଼ି ଅସୁଲ କରନ୍ତି । ଅଫିମ, ଗଞ୍ଜେଇ




[ ସରକାରଙ୍କ ଆୟ ଓ ବ୍ୟୟ ]

କିଣିବାବେଳେ ସେଥିରେ କେତେ କର ଭିଡ଼ା ହୋଇଛି ବା କିଣିବା ଲୋକ କେତେ କର ଦେଉଛି ଜାଣିପାରେ ନାହିଁ । ଲୁଣକର ମଧ୍ୟ ଜଣା ନ ପଡ଼ିବା ଭଳି କର । ଏପରି କର ବସାଇଲେ ସରକାରଙ୍କୁ ସୁବିଧା; କାରଣ ଲୋକମାନେ ନ ଜାଣିପାରି ଅସନ୍ତୁଷ୍ଟ ହୁଅନ୍ତି ନାହିଁ । ଲୁଣ ଉପରେ ଏବେ ଆଉ କର ନାହିଁ । ଲୁଣ କର ଗରିବ ଲୋକଙ୍କୁ ବାଧୁଛି ଜାଣି ଆମ ଜାତୀୟ ସରକାର ଏହି କର ଉଠାଇ ଦେଇଛନ୍ତି ।

**ବିଭିନ୍ନ ପ୍ରକାର କର**—ସରକାର ତାଙ୍କ କାମ ଚଳାଇବା ପାଇଁ ଭିନ୍ନ ଭିନ୍ନ ପ୍ରକାର କର ବସାନ୍ତି । କର ବଦଳରେ ଆଉ କେତେଗୁଡ଼ିଏ ଶବ୍ଦ ବ୍ୟବହାର କରାଯାଏ, ଯଥା ରାଜସ୍ୱ, ଖଜଣା, ଟିକସ, ମାସୁଲ, ଶୁଳ୍କ, ଭଡ଼ା, ସିସ୍ଟ, ସେସ୍, ଫି । ଏ ଶବ୍ଦଗୁଡ଼ିକ ତୁମର ମନେ ରଖିବା ଉଚିତ୍ । ସରକାରଙ୍କର କେତେଗୁଡ଼ିଏ ବିଭାଗରୁ ଆଦୌ ଆୟ ହୁଏ ନାହିଁ କିମ୍ବା ଯାହା ଆୟ ହୁଏ ତାହା ଖର୍ଚ୍ଚ ତୁଳନାରେ ଅତି ଅଳ୍ପ । ଶିକ୍ଷା ବିଭାଗରୁ, ଡାକ୍ତରୀ ବିଭାଗରୁ ସରକାରଙ୍କର କ'ଣ ଆୟ ହୁଏ ! ସ୍କୁଲ, କଲେଜ, ଡାକ୍ତରଖାନାରେ ଖରଚ ଖୁବ୍ ବେଶି; ଆୟ କିଛି ନାହିଁ କହିଲେ ଚଳେ । ଏଗୁଡ଼ିକ ହେଲା ସରକାରଙ୍କର ଖରଚ ବିଭାଗ । ଲୋକଙ୍କ ହିତ ଓ ଉନ୍ନତି ଏ ବିଭାଗର ଉଦ୍ଦେଶ୍ୟ । ରେଳ ବିଭାଗରୁ, ଡାକ ଓ ତାର ବିଭାଗରୁ ସରକାରଙ୍କର ବେଶ୍ ଭଲ ଆୟ ହୁଏ । ସରକାରଙ୍କୁ ଆମେ ଯେତେପ୍ରକାର କର ଦେଉଁ, ତା' ଭିତରୁ କେତେକ ପ୍ରଧାନ କର ହେଉଛି ରାଜସ୍ୱ, ଆୟକର, ଅବକାରୀ କର, ବାଣିଜ୍ୟ ଶୁଳ୍କ ରେଳଭଡ଼ା, ଡାକ ଓ ତାର ମାସୁଲ ଇତ୍ୟାଦି ।

**ଖଜଣା ବା ରାଜସ୍ୱ**—ପୂର୍ବେ ରାଜାମାନେ ଲୋକଙ୍କଠାରୁ ଶସ୍ୟର ଆମଦାନୀରୁ କିଛି ଖଜଣା ପାଇଁ ନେଉଥିଲେ । ଯାହାର ଫସଲ ଯେତେ ହେଉଥିଲା ତାର କିଛି ଅଂଶ ସେ ରାଜାଙ୍କୁ ଖଜଣାରୂପେ ଦେଉଥିଲା । ସେତେବେଳେ ଶସ୍ୟର ଅଦଳବଦଳରେ ବିକାକିଣା ହେଉଥିଲା । ପରେ କଉଡ଼ିର ବ୍ୟବହାର ହେଲା । ତା'ପରେ ଟଙ୍କା ପଇସାରେ କାରବାର ଚଳିଲା । ଖଜଣା ମଧ୍ୟ ଟଙ୍କା ପଇସାରେ ଦିଆନିଆ ହେଲା । ସରକାର ସବୁ ଜମିର ମାଲିକ । ସେଥିପାଇଁ ସେ ଜମି ଉପରୁ ଖଜଣା ନିଅନ୍ତି । କେତେ ଜାଗାରେ ଜମିଦାର ଓ ମଧ୍ୟସ୍ୱତ୍ୱାଧିକାରୀ ବା ମକଦ୍ଦମମାନେ ଅଛନ୍ତି ।

ଏମାନେ ଲୋକଙ୍କୁ ଜମି ଚାଷ କରିବାକୁ ଦିଅନ୍ତି ଓ ତାଙ୍କଠାରୁ ଖଜଣା ଅସୁଲ୍ କରି ସରକାରଙ୍କୁ ବର୍ଷକୁ ବର୍ଷ ଖଜଣା ଦିଅନ୍ତି । ଏହାକୁ ଜମିଦାରୀ ପ୍ରଥା କହନ୍ତି । ଜମିଦାରମାନେ ଅନେକ ସମୟରେ ପ୍ରଜାମାନଙ୍କ ଉପରେ ଜୁଲୁମ୍ କରନ୍ତି ଓ ମନଇଚ୍ଛା ଖଜଣା ଅସୁଲ୍ କରନ୍ତି । ତେଣୁ ସରକାର ପ୍ରଜାମାନଙ୍କ ସୁବିଧାପାଇଁ ପ୍ରଜାସ୍ୱତ୍ୱ ଆଇନ କରିଛନ୍ତି । ଏହି ଆଇନ ଅନୁସାରେ ସରକାର ମଝିରେ ମଝିରେ ବନ୍ଦୋବସ୍ତ କରି ଜମିର ଖଜଣା ସ୍ଥିର କରି ଦିଅନ୍ତି । କେତେକ ଜାଗାରେ ସରକାର ଲୋକଙ୍କୁ ସିଧା ଜମି ଦେଇ ତାଙ୍କଠାରୁ ଖଜଣା ସିଧା ଅସୁଲ କରନ୍ତି । ଏହାକୁ ରୟତ୍‌ୱାରି ପ୍ରଥା କହନ୍ତି । ଏଥିରେ ସରକାର ନିଜେ ଜମିଦାର । ଏ ପ୍ରଥା ଗଞ୍ଜାମର କେତେକ ଅଞ୍ଚଳରେ, ଅନୁଗୁଳରେ, କନ୍ଧମାଳରେ ଓ ଖାସମାହାଲରେ ଚଳୁଛି ? ସବୁ ଦେଶରେ ସରକାର ଜମି ଉପରେ ଖଜଣା ବସାନ୍ତି ଓ ଖଜଣା ଅସୁଲ କରନ୍ତି । ଯାହାର ଚାଷଜମି ନାହିଁ, ତା'ର ଘରଭିଡ଼ା ବା ବାଡ଼ିବଗିଚା କିଛି ଥାଏ; ତା'ପାଇଁ ମଧ୍ୟ ଖଜଣା ଦେବାକୁ ହୁଏ । ଜମିକର ବା ଭୂରାଜସ୍ୱରୁ ସରକାରଙ୍କର ଖୁବ୍ ବେଶି ଆୟ ହୁଏ । ଅଧିକାଂଶ ପ୍ରଦେଶରେ ସରକାର ଜମିଦାରୀ ପ୍ରଥା ଉଠାଇଦେଲେଣି । ଓଡ଼ିଶା ସରକାର ମଧ୍ୟ ଏହି ପ୍ରଥା ଉଠାଇ ଦେଇଅଛନ୍ତି ।

**ଆୟକର**—ବଡ଼ ବଡ଼ ସରକାରୀ କର୍ମଚାରୀ ଓ ବ୍ୟବସାୟୀମାନେ ବହୁତ ଟଙ୍କା ରୋଜଗାର କରନ୍ତି । ସେମାନଙ୍କ ବାର୍ଷିକ ଆୟ ଉପରେ ସରକାର ଗୋଟିଏ କର ବସାନ୍ତି । ଏହାକୁ

ଆୟକର (Income-Tax) କହନ୍ତି । ସରକାର କିଛି ପରିମାଣ ଆୟ ଉପରେ କର ବସାନ୍ତି ନାହିଁ, ତାଠାରୁ ଅଧିକ ଆୟ ଉପରେ କର ବସାନ୍ତି । ଦେଶରେ ଯେତେ ବଡ଼ ବଡ଼ ମହାଜନ ବା କମ୍ପାନୀ ଅଛନ୍ତି, ସେମାନଙ୍କୁ ଆୟକର ଦେବାକୁ ହୁଏ ।

**ଅବକାରୀ କର** (Excise)—ଅଫିମ, ଗଞ୍ଜେଇ, ମଦ ପ୍ରଭୃତି ନିଶାଜିନିଷ ଗୁଡ଼ିକୁ ଅବକାରୀ ଜିନିଷ କହନ୍ତି । ସରକାରଙ୍କ ଅନୁମତି ନ ନେଇ ଯେ ସେ ଲୋକ ଏ ଜିନିଷ ଗୁଡ଼ିକ ବିକାକିଣା କରି ପାରିବେ ନାହିଁ । ଅନୁମତି ନେବାକୁ ହେଲେ ସରକାରଙ୍କୁ ଲାଇସେନ୍ସ୍ ଫି ଦେବାକୁ ହୁଏ । ଏସବୁ କଥା ବୁଝା ଶୁଝା କରିବା ପାଇଁ ସରକାରଙ୍କର ଗୋଟିଏ ଅଲଗା ବିଭାଗ—ଅବକାରୀ ବିଭାଗ ଅଛି । ଏ ବିଭାଗରୁ ସରକାରଙ୍କର ଭଲ ଆୟ ହୁଏ । ଆଜିକାଲିକା ସରକାର ଆମ ଲୋକଙ୍କ ସରକାର । ଏ ସରକାର ଲୋକଙ୍କ ହିତ ଚାହାନ୍ତି । ଲୋକେ ନିଶା-ଜିନିଷ ଖାଇ ମାତାଲ ହେବେ, ଚରିତ୍ର ନଷ୍ଟ କରିବେ—ଏ କଥା କୌଣସି ଲୋକହିତକର ସରକାର ବରଦାସ୍ତ କରି ନ ପାରନ୍ତି । ସେଥିପାଇଁ ଆମ ଦେଶୀୟ ସରକାର ନିଶା ନିବାରଣ ଆଇନ ଆସ୍ତେ ଆସ୍ତେ ପ୍ରୟୋଗ କରୁଛନ୍ତି । ଆଜି ମଧ୍ୟ ସରକାର ଅବକାରୀ ଜିନିଷର ଦାମ୍ ଖୁବ୍ ବଢ଼ାଇ ଦେଇଛନ୍ତି । ତା' ହେଲେ ଲୋକେ ଏ ସବୁ ଜିନିଷ ସହଜରେ କିଣି ପାରିବେ ନାହିଁ । କିନ୍ତୁ ନିଶାଖୋର ଲୋକମାନେ ନିଶାର ଅଭ୍ୟାସ ସହଜେ ଛାଡ଼ି ପାରନ୍ତି ନାହିଁ । ସରକାର ଯେତେ କଟକଣା କଲେ ସୁଦ୍ଧା ଲୁଚିଛପିରେ

ନିଶା ଜିନିଷର କାରବାର ଚାଲିଛି ! ଲୋକଙ୍କର ନିଜକଥା ନିଜେ ବୁଝିବା ଦରକାର । ନାଗରିକ ଭାବରେ ତୁମର ଏ ଦିଗରେ ଯଥେଷ୍ଟ କର୍ତ୍ତବ୍ୟ ରହିଅଛି । ଲୋକଙ୍କୁ ନିଶାଦ୍ରବ୍ୟର କୁଫଳ ବୁଝାଇ ଶୁଝାଇ ସେଥିରୁ ନିବୃତ୍ତ କରିବା ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ ।

ଲୁଣକର ବିଷୟ ଆଗରୁ କୁହା ହୋଇଅଛି । ଏ କର ଉଠାଇଦେଇ ଆମ ସରକାର ଗରିବ ଲୋକଙ୍କର ଉପକାର କରିଛନ୍ତି ।

**ବାଣିଜ୍ୟ ଶୁଳ୍କ** (Customs Duty)—ଆଜିକାଲି ଦେଶ ଦେଶ ଭିତରେ ବାଣିଜ୍ୟ ନ ହେଲେ କୌଣସି ଦେଶ ଚଳି




[ ମାଲବୁହା ଜାହାଜ ]

ପାରିବ ନାହିଁ । ଆମ ଦେଶରେ ଯେଉଁସବୁ ଜିନିଷ ତିଆରି ହୁଏ

ନାହିଁ ସେସବୁ ଇଙ୍ଗ୍ଲେଣ୍ଡ, ଆମେରିକା, ଜାପାନ ପ୍ରଭୃତି ଦେଶରୁ ଆମ ଦେଶକୁ ଜାହାଜରେ ବୋଝେଇ ହୋଇ ଆସେ । ଏହାକୁ ଆମଦାନୀ ବାଣିଜ୍ୟ କହନ୍ତି । ଆମ ଦେଶରୁ ମଧ୍ୟ ଅନେକ ଜିନିଷ ଅନ୍ୟ ଦେଶମାନଙ୍କୁ ଜାହାଜରେ ପଠାଯାଏ । ଏହାକୁ ରପ୍ତାନି ବାଣିଜ୍ୟ କହନ୍ତି । ଏହି ଉଭୟ ପ୍ରକାର ବାଣିଜ୍ୟ ଉପରେ ସରକାର କର ବା ଶୁଳ୍‌କ ବସାନ୍ତି । ଆମଦାନୀ ଜିନିଷ ଉପରେ କର ନ ବସାଇଲେ ବିଦେଶୀ ବଣିକମାନେ ତାଙ୍କ ଜିନିଷ ଶସ୍ତାରେ ବିକ୍ରି କରିବାର ସୁବିଧା ପାଇବେ । ଆମ ଦେଶ ତିଆରି ଜିନିଷ ମହଙ୍ଗାରେ ବିକ୍ରି ହେଲେ ଲୋକେ ତାହା କିଣିବେ ନାହିଁ । ତାହାହେଲେ ଆମ ଦେଶର ଅନେକ ଶିଳ୍ପ ଉଠେଇ ପାରିବ ନାହିଁ, ଶେଷକୁ ଲୋପ ପାଇଯିବ । ଇଂରେଜମାନଙ୍କ ରାଜତ୍ୱରେ ଏହିପରି ଅନେକ ଶିଳ୍ପ ଆମ ଦେଶରୁ ଲୋପ ହୋଇଯାଇଛି । ବିଦେଶ ଲୁଗା, ବିଦେଶୀ ଖେଳନା, ବିଦେଶୀ ନିତ୍ୟବ୍ୟବହାର୍ଯ୍ୟ ଜିନିଷମାନ ଆମ ଦେଶର ତନ୍ତୀକୁଳକୁ ଓ କାରିଗରମାନଙ୍କୁ ଅକର୍ମା କରିପକାଇଅଛି । ଲୋକେ ନିଜନିଜର କୁଳ ବ୍ୟବସାୟ ଛାଡ଼ି ପେଟ ପୋଷିବା ପାଇଁ କୁଲି ମୂଲିଆ କାମ କରୁଛନ୍ତି । ସୁଖର କଥା, ଆମ ଜାତୀୟ ସରକାର ନୂଆ ନୂଆ ଶିଳ୍ପର ଯୋଜନା ପ୍ରସ୍ତୁତ କରି ତାହା କାର୍ଯ୍ୟରେ ପରିଣତ କରୁଅଛନ୍ତି ।

**ରେଲଭଡ଼ା**—ଆମ ଦେଶରେ ଅନେକଗୁଡ଼ିଏ ରେଲପଥ ଅଛି । ରେଲଗାଡ଼ିରେ ଯାତ୍ରୀମାନେ ଯା ଆସ କରନ୍ତି । ସେମାନେ ଷ୍ଟେସନରେ ଟିକଟ କିଣି ରେଲଗାଡ଼ିରେ ବସନ୍ତି । ଟିକଟରେ ଭଡ଼ା ଛପା ହୋଇଥାଏ । ଦୂରତ୍ୱ ଅନୁସାରେ ଭଡ଼ା କମ୍ ବେଶି ହୁଏ । ରେଲଗାଡ଼ିରେ ତିନଗୋଟି ଶ୍ରେଣୀ ଥାଏ । ସବୁଠାରୁ ତଳ ଶ୍ରେଣୀ ହେଉଛି ତୃତୀୟ ଶ୍ରେଣୀ । ଏହି ଶ୍ରେଣୀରେ ଅଧିକାଂଶ

ଯାତ୍ରୀ ବସନ୍ତି । ତେଣୁ ଘର ଭଡ଼ ହୁଏ । ତା’ ଉପର ଶ୍ରେଣୀ ହେଉଛି ଦ୍ୱିତୀୟ ଶ୍ରେଣୀ; ତା’ ଉପରକୁ ହେଉଛି ପ୍ରଥମ ଶ୍ରେଣୀ । ରେଲଗାଡ଼ି ଆସିବା ସମୟରେ ଷ୍ଟେସନକୁ ଯାଇ ଦେଖିବ—ଟିକଟ ଘର ପାଖରେ ବହୁତ ଲୋକ ରୁଣ୍ଡ ହୋଇ ଟିକଟ କିଣିବା ପାଇଁ ବ୍ୟସ୍ତ ହେଉଛନ୍ତି । ଏଇଥିରୁ ତୁମେ ଜାଣିପାରିବ, ଗାଡ଼ି ଆସିବା ସମୟରେ ପ୍ରତି ଷ୍ଟେସନରେ ପ୍ରତିଦିନ କେତେ ଟଙ୍କାର ଟିକଟ ବିକ୍ରି ହେଉଥିବ । ଏତ ଗଲା ଯାତ୍ରୀଗାଡ଼ି କଥା । ମାଲଗାଡ଼ିରୁ ଆହୁରି ଅଧିକ ଆୟ ହୁଏ । ଦେଶସାରା ମାଲଗାଡ଼ିରେ ଜିନିଷପତ୍ର ବୁହା ଚାଲିଛି । ମାଲଗାଡ଼ିରେ ଜିନିଷ ପଠାଇବା ପାଇଁ ମାସୁଲ ଦେବାକୁ ହୁଏ । ସ୍ଥାନର ଦୂରତା ଅନୁସାରେ ମାସୁଲ କମ୍ ବେଶି ପଡ଼େ ।

ରେଲଗାଡ଼ି ଚଳାଇବାର ଖର୍ଚ୍ଚ, କର୍ମଚାରୀମାନଙ୍କ ଦରମା ଇତ୍ୟାଦି ବାବଦ୍ ଖର୍ଚ୍ଚ ବାଦ୍ ଯାଇ ରେଲ ବିଭାଗରୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କା ଲାଭ ହୁଏ । ପୂର୍ବେ ଭିନ୍ନ ଭିନ୍ନ ରେଲପଥ ଗୋଟିଏ ଗୋଟିଏ କମ୍ପାନୀ ଚଳାଉଥିଲେ । କମ୍ପାନୀମାନଙ୍କ ଆୟର ଏକ ଅଂଶ ସରକାର ନେଉଥିଲେ । ବର୍ତ୍ତମାନ ସମସ୍ତ ରେଲବିଭାଗ ସରକାରଙ୍କ ହାତରେ ଅଛି । ରେଲବିଭାଗର ସମସ୍ତ ଆୟ ସରକାର ନେଉଛନ୍ତି ।

**ଡାକ ଓ ତାର ମାସୁଲ**—ଡାକ ଓ ତାର ବିଭାଗ ବିଷୟରେ ଆଗରୁ କୁହାଯାଇଛି । ଡାକ ବିଭାଗ ଦ୍ୱାରା ଆମର ଅନେକ କାମ ସୁବିଧାରେ ହୁଏ । କିନ୍ତୁ ପ୍ରତି କାମ ପାଇଁ ଆମକୁ ପଇସା ଦେବାକୁ ହୁଏ । ଚିଠି ଲେଖିବା ପାଇଁ ଡାକଘରୁ ପୋଷ୍ଟ-କାର୍ଡ, ଲଫାପା କିଣିବାକୁ ହୁଏ । ମନିଅର୍ଡ଼ର, ପାର୍ସେଲ, ରେଜିଷ୍ଟ୍ରୀ,

ଇନ୍‌ସିଓରର କରିବା ପାଇଁ ଫି ବା ମାସୁଲ ଦେବବାକୁ ପଡେ । କୌଣସି ବଡ଼ ଡ଼ାକଘରକୁ ଯାଇ ଦେଖିବ, ସେଠାରେ କପରି ଗଦା ଗଦା ଚିଠି ଦିଆ ନିଆ ହେଉଛି; ଆଉ ମନିଅର୍ଡ଼ର, ପାର୍ସଲ, ରେଜେଷ୍ଟ୍ରୀ ଆଦି କରିବାପାଇଁ କେତେ ଲୋକ ଆସୁଛନ୍ତି ଓ ଯାଉଛନ୍ତି । ପ୍ରତିଦିନ ଏହିପରି କାରବାର ଚାଲିଛି । ଦେଶସାରା ହଜାର ହଜାର ଡ଼ାକଘର ଅଛି । ଡ଼ାକ ବିଭାଗ କେନ୍ଦ୍ର ସରକାରଙ୍କ ଅଧୀନରେ ଚଳେ । ଏହି ବିଭାଗରୁ ସରକାରଙ୍କ ବହୁତ ବେଶି ଆୟ ହୁଏ । ଡାକ ବିଭାଗ ଯେପରି ଦରକାରୀ, ସେହିପରି ଲାଭଜନକ ।

ତାର ବିଭାଗରୁ ମଧ୍ୟ ସରକାରଙ୍କର କମ୍ ଆୟ ହୁଏ ନାହିଁ ।

ଆଗରୁ କୁହାଯାଇଛି ଯେ ଶିକ୍ଷା, ସ୍ୱାସ୍ଥ୍ୟ, ପୁଲିସ, ସୈନ୍ୟ ପ୍ରଭୃତି ବିଭାଗରେ ସରକାରଙ୍କର ଯଥେଷ୍ଟ ଖର୍ଚ୍ଚ ହୁଏ । ଅଥଚ ଆୟ ଅତି ଅଳ୍ପ ହୁଏ ବା କିଛି ହୁଏ ନାହିଁ । ପୁଣି ଆଜିକାଲି ସରକାର ଅନେକ ନୂଆ ବିଭାଗ ଖୋଲୁଛନ୍ତି । ସରକାରଙ୍କ ଖର୍ଚ୍ଚ କ୍ରମେ କ୍ରମେ ବଢ଼ୁଛି । ସେଥିପାଇଁ ସରକାରଙ୍କୁ କେତେକ ନୂଆ ନୂଆ ଟିକସ ବସାଇ ତାଙ୍କ ଆୟ ବଢ଼ାଇବାକୁ ହେଉଛି । ଏହିପରି ଅଧିକା କର—ବିକ୍ରୀ କର ଓ ଆମୋଦ ପ୍ରମୋଦ କର କେତେକ ବର୍ଷ ହେଲା ଧାର୍ଯ୍ୟ କରାହୋଇଛି ।

ବର୍ତ୍ତମାନ ତୁମେ ବୁଝି ପାରିବ ଯେ ସରକାର ଯେଉଁ କର ଆଦାୟ କରନ୍ତି; ତାହା ଲୋକମାନଙ୍କ ସକାଶେ ଖର୍ଚ୍ଚ ହୁଏ । ସରକାର କହିଲେ ଆମରି ଭିତରୁ କେତେଜଣ ମୁଖିଆ ଲୋକଙ୍କୁ ବୁଝାଏ । ସେମାନଙ୍କୁ ଆମେ ଭୋଟ ଦେଇ ବାଛି ତାଙ୍କ ହାତରେ ଦେଶର ଶାସନଭାର ଦେଇଛୁଁ । ସରକାର ଦେଶବାସୀଙ୍କୁ

ବେଖାତରୁ କର ଚଳି ପାରିବେ ନାହିଁ; ଆମେ ସରକାରଙ୍କୁ ଅବିଶ୍ୱାସ କଲେ ଚଳି ପାରିବୁ ନାହିଁ । ସରକାର ଦେଶବାସୀଙ୍କ ଅବସ୍ଥା ପ୍ରତି ଦୃଷ୍ଟି ଦେଇ କରଧାର୍ଯ୍ୟ କରନ୍ତି ।

## ପ୍ରଶ୍ନ

୧ । ସରକାର କର ଧାର୍ଯ୍ୟ କରନ୍ତି କାହିଁକି ?

୨ । କେଉଁ ପ୍ରକାର କରରେ ଲୋକେ ଜାଣି ପାରନ୍ତି ନାହିଁ ଯେ ସେମାନେ କର ଦେଉଛନ୍ତି ? ଉଦାହରଣ ଦେଇ ବୁଝାଇଦିଅ ।

୩ । ନିମ୍ନଲିଖିତ କେତୋଟି କାର୍ଯ୍ୟ ପାଇଁ ପ୍ରତିକାର ହେବା ଉଚିତ ?

(କ) ମାଗୁଣି ପ୍ରଧାନ ସରକାରଙ୍କ ଖାସମାହାଲ ଜମିରେ ବସବାସ କରି ରହିଛି । ଜମିର ଖଜଣା ବର୍ଷକୁ ୫ ୪୷; ସେ ବର୍ଷେ ଖଜଣା ଦେଇନାହିଁ ।

(ଖ) ହରି ସାମଲ ଅଫିମ ବିକିବା ପାଇଁ ସରକାରଠାରୁ ଅନୁମତି ବା ଲାଇସେନ୍ସ୍ ପାଇନାହିଁ । ସେ ଗୋପନରେ ଅଫିମ ବିକ୍ରି କରେ ।

(ଗ) ଭିକାରୀ ମହାନ୍ତି ବିନା ଟିକଟରେ ରେଲଗାଡ଼ିରେ ବସି କଟକରୁ ପୁରୀକୁ ଯାଉଛି ।

(ଘ) ତୃତୀୟ ଶ୍ରେଣୀର ହରିହର ମିଶ୍ର ତା' ଘରକୁ ଖଣ୍ଡେ ଚିଠି ଲେଖି ସାଦା ଲଫାପାରେ ଚିଠି ପୂରାଇ ଲଫାପା ଉପରେ ଠିକଣା ଲେଖି ଡାକଘର ଚିଠିବାକ୍ସରେ ପକାଇଲା ।

୪ । ସରକାରୀ ସ୍କୁଲରୁ ସରକାର କି ଆୟ ପାଆନ୍ତି ?

୫ । ସରକାର ଲୋକଙ୍କ ପାଖରୁ କେତେ ପ୍ରକାର କର ଆଦାୟ କରନ୍ତି; ତାହାର ଗୋଟିଏ ତାଲିକା କର ।

---

# ଅଷ୍ଟମ ଅଧ୍ୟାୟ

## ସ୍ଥାନୀୟ ସ୍ୱାୟତ୍ତଶାସନ

**ସ୍ଥାନୀୟ ସ୍ୱାୟତ୍ତଶାସନ ଅର୍ଥ**—ପ୍ରତ୍ୟେକ ଦେଶରେ ସାନ ସାନ ଅଞ୍ଚଳ ଗୁଡ଼ିକର କେତେକ ବିଶେଷ କାର୍ଯ୍ୟ ସମ୍ପାଦନ ପାଇଁ ଗୋଟିଏ ଗୋଟିଏ ସ୍ଥାନୀୟ ଅନୁଷ୍ଠାନ ଅଛି । ଅତି ପ୍ରାଚୀନ କାଳରୁ ଭାରତରେ ଉନ୍ନତ ଧରଣର ସ୍ଥାନୀୟ ଅନୁଷ୍ଠାନମାନ ଥିଲା । କିନ୍ତୁ ବ୍ରିଟିଶ ରାଜତ୍ୱ ପ୍ରତିଷ୍ଠିତ ହେବାରୁ ଏହି ଅନୁଷ୍ଠାନ ଗୁଡ଼ିକର ଅବସାନ ଘଟିଥିଲା ।

ଆମ ଦେଶର ଲୋକେ ନିଜେ କେତେକ କ୍ଷେତ୍ରରେ ଶାସନ କାମ ଚଳାଇବା ପାଇଁ ନାନାପ୍ରକାର ଆନ୍ଦୋଳନ ଚଳାଇଲେ । ଇଂରେଜମାନେ ଦେଖିଲେ ଯେ ଭାରତୀୟମାନଙ୍କୁ କେତେକ ବିଭାଗରେ ନିଜ କାମ ବୁଝିବାକୁ ସୁବିଧା ନଦେଲେ ସେମାନେ ସନ୍ତୁଷ୍ଟ ହୋଇ ରହିବେ ନାହିଁ । ଶାସନ କାର୍ଯ୍ୟରେ ମଧ୍ୟ ସେମାନଙ୍କର କୌଣସି ଅଭିଜ୍ଞତା ହେବ ନାହିଁ । ଏହା ବିଚାରି ସେମାନେ ଭାରତବାସୀଙ୍କୁ କେତେକ ବିଭାଗର କାମ ନିଜେ ନିଜେ ବୁଝି ସୁଝି କରି ଚଳାଇବା ପାଇଁ ଅଧିକାର ଦେଲେ । ସେତେବେଳେ ଲର୍ଡ଼ ରିପନ୍ ଭାରତର ବଡ଼ଲାଟ ଥିଲେ (୧୮୮୦ ରୁ ୧୮୮୪ ଖ୍ରୀଷ୍ଟାବ୍ଦ) । ସେହି ଦିନୁ ଏ ବିଭାଗଗୁଡ଼ିକ ସ୍ୱାୟତ୍ତଶାସନ ବିଭାଗ ହୋଇ ରହିଅଛି ।

ବର୍ତ୍ତମାନ ଇଂରେଜମାନେ ଆଉ ଆମ ଦେଶରେ ରାଜା ବା ଶାସକ ହୋଇ ରହି ନାହାନ୍ତି । ବିଦେଶୀ ଶାସନରେ ଆମ ଦେଶବାସୀଙ୍କ ହାତରେ ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତାଘାଟ, ଯାନବାହନ

ବିଷୟରେ କେତେକ ସାମାନ୍ୟ କ୍ଷମତା ଦିଆ ହୋଇଥିଲା । ଏହାକୁ ସ୍ୱାୟତ୍ତ ଶାସନ କହନ୍ତି । ବର୍ତ୍ତମାନ ଦେଶର ସମସ୍ତ ଶାସନ ଭାର ଦେଶବାସୀଙ୍କ ଉପରେ । ଆଜି ଅଲଗା ସ୍ୱାୟତ୍ତଶାସନ ବିଭାଗର ଅର୍ଥ କିଛି ରହୁ ନାହିଁ । ତଥାପି ପୂର୍ବ ଶାସନପ୍ରଥା ସମ୍ପୂର୍ଣ୍ଣ ବଦଳି ନାହିଁ । ତେଣୁ ସ୍ୱାୟତ୍ତ ଶାସନ ବିଭାଗ ପ୍ରାୟ ପୂର୍ବପରି କାର୍ଯ୍ୟ କରୁଅଛି । ସ୍ଥାନ ଭେଦରେ ସ୍ୱାୟତ୍ତଶାସନ ଅନୁଷ୍ଠାନ ଗୁଡ଼ିକର ନାମ ଓ କାର୍ଯ୍ୟରେ ପ୍ରଭେଦ ହୋଇଥାଏ । ଏଥିପାଇଁ ଏଗୁଡ଼ିକୁ **ସ୍ଥାନୀୟ ସ୍ୱାୟତ୍ତଶାସନ** ଅନୁଷ୍ଠାନ କହିବା ଯୁକ୍ତିସଙ୍ଗତ ଅଟେ ।

ତୁମ ସ୍କୁଲର ପ୍ରଧାନଶିକ୍ଷକ ତୁମ ସ୍କୁଲର ଶାସନକର୍ତ୍ତା । ସ୍କୁଲଟି ତୁମର । ସ୍କୁଲର ଶାସନ ଓ ଶୃଙ୍ଖଳା ପାଇଁ ତୁମେ ନିଜେ କିଛି କାମ କରି ପାରିଲେ ଭଲ । ଏପରି କାମ ତୁମେ ଯେ ନ କରୁଛ ତାହା ନୁହେ । ତୁମ ଶ୍ରେଣୀରେ ଜଣେ ମନିଟର୍ (Monitor) ବା ବଡ଼ଚାଟ ଅଛନ୍ତି । ତୁମ ଶ୍ରେଣୀର ପିଲାମାନେ ଭୋଟ ଦେଇ ତାଙ୍କୁ ମନିଟର୍ କରିଛନ୍ତି । ସବୁ ପିଲା ମନିଟର୍‌ଙ୍କୁ ମାନନ୍ତି । ଶିକ୍ଷକ ଶ୍ରେଣୀରେ ନ ଥିଲା ବେଳେ ମନିଟର୍ ପିଲାମାନଙ୍କ ମଧ୍ୟରେ ଶାନ୍ତି ଶୃଙ୍ଖଳା ରକ୍ଷା କରନ୍ତି । ଏହାଦ୍ୱାରା ତୁମ୍ଭେମାନେ ସ୍କୁଲର ଶାସନକାର୍ଯ୍ୟରେ ସାହାଯ୍ୟ କର । ଏହା ସ୍କୁଲରେସ୍ୱାୟତ୍ତଶାସନର ଉଦାହରଣ । ସ୍କୁଲରେ ଫୁଟବଲ୍ ଆଦି ନାନା ପ୍ରକାର ଖେଳର ଆୟୋଜନ ଅଛି । ଖେଳର ସୁପରିଚାଳନା ପାଇଁ ପିଲାମାନଙ୍କ ଭିତରୁ ଜଣେ କପ୍ତାନ (Captain) ବା ଅଧ୍ୟକ୍ଷ ବଛା ହୁଅନ୍ତି । ଖେଳାଳିମାନେ ଖେଳର ନିୟମ ମାନି ଖେଳୁଛନ୍ତି କି ନାହିଁ ଦେଖିବା, ଖେଳପଡ଼ିଆରେ ପିଲାଙ୍କ ଭିତରେ ପାଟିତୁଣ୍ଡ, ମାରପିଟ୍ ବନ୍ଦ କରିବା—ଏଗୁଡ଼ିକ କପ୍ତାନଙ୍କ କାମ । କପ୍ତାନ୍ ନିଜେ ଜଣେ ଖେଳାଳି ହେଲେ ମଧ୍ୟ ଅନ୍ୟ ଖେଳାଳିମାନେ

ତାଙ୍କ କଥା ମାନି ଚଳନ୍ତି । କପ୍ତାନ ପ୍ରଥା ସ୍କୁଲରେ ସ୍ୱାୟତ୍ତଶାସନର ଆଉ ଗୋଟିଏ ଉଦାହରଣ । ସ୍କୁଲର ଟିଫିନ୍ ବା ଜଳଖିଆ କମିଟି, ଛାତ୍ରମାନଙ୍କର ଭିନ୍ନ ଭିନ୍ନ ପ୍ରକାର କ୍ଲବ୍ ବା ସମିତିମାନ ଛାତ୍ରମାନଙ୍କୁ ସ୍ୱାୟତ୍ତଶାସନ ଶିକ୍ଷା ଦେବା ଉଦ୍ଦେଶ୍ୟରେ ଗଠିତ ହୋଇଅଛି । ସ୍କୁଲରେ ସ୍ୱାୟତ୍ତଶାସନର ଏହି ଧାରଣା ଛାତ୍ରମାନଙ୍କର ହେଲେ, ତାହା ଭବିଷ୍ୟତରେ ଦେଶଶାସନ ପାଇଁ ବହୁତ ସାହାଯ୍ୟ କରିବ ।

**ବିଭିନ୍ନ ପ୍ରକାର ସ୍ୱାୟତ୍ତଶାସନ ଅନୁଷ୍ଠାନ**—ସ୍ୱାୟତ୍ତଶାସନ ବିଭାଗର ଅନୁଷ୍ଠାନଗୁଡ଼ିକ ନାନା ପ୍ରକାର । ତଳେ ଏହି ଅନୁଷ୍ଠାନଗୁଡ଼ିକର ନାମ ଓ ବିବରଣୀ ଦିଆଗଲା ।

**ପଞ୍ଚାୟତ ବୋର୍ଡ଼**—କେତେଗୋଟି ଗାଁକୁ ମିଶାଇ ଗୋଟିଏ ଗୋଟିଏ ଇଉନିୟନ ଗଠନ କରାହୋଇଛି । ପ୍ରତି ଇଉନିୟନରେ ଗୋଟିଏ ଗୋଟିଏ ପଞ୍ଚାୟତ ବୋର୍ଡ଼ ଅଛି । ଏହି ବୋର୍ଡ଼ରେ ପାଞ୍ଚଜଣ ସଭ୍ୟ ରହନ୍ତି । ଲୋକମାନଙ୍କ ମତାମତ ନେଇ ସରକାର ଏହି ସଭ୍ୟମାନଙ୍କୁ ବାଛନ୍ତି । ପ୍ରଧାନ ସଭ୍ୟ ବୋର୍ଡ଼ର ପ୍ରେସିଡେଣ୍ଟ ବା ସଭାପତି ହୁଅନ୍ତି । ସଭ୍ୟମାନଙ୍କ ମଧ୍ୟରୁ କେହି ଦରମା ପାଆନ୍ତି ନାହିଁ । ସଭ୍ୟ ହେବାର ସମ୍ମାନକୁ ସେମାନେ ଯଥେଷ୍ଟ ପୁରସ୍କାର ବୋଲି ମନେ କରନ୍ତି । ଚୌକିଦାର ଓ ଦଫାଦାରମାନଙ୍କୁ ନିଯୁକ୍ତ କରିବା, ଚଉକିଦାରୀ ଟିକସ ଆଦାୟ କରିବା ଓ ଗାଁର ଭଲମନ୍ଦ ଖବର ନେବା ପଞ୍ଚାୟତବୋର୍ଡ଼ର କାମ । ଛୋଟ ଛୋଟ ମକଦ୍ଦମା ବିଚାର କରିବାର କ୍ଷମତା ମଧ୍ୟ ବୋର୍ଡ଼ର ଅଛି । ଆଜିକାଲି

ଦେଶୀୟ ସରକାର ପଞ୍ଚାୟତ ଶାସନର ଉନ୍ନତି ପାଇଁ ଏହାର ପୁନର୍ଗଠନ କରିବାକୁ ଚେଷ୍ଟା ଓ ଯତ୍ନ କରୁଛନ୍ତି ଓ ଆଞ୍ଚଳିକ ଶାସନ ପ୍ରଥା ପ୍ରବର୍ତ୍ତିକ କରିଅଛନ୍ତି ।

**ଇଉନିୟନ ବୋର୍ଡ଼**—ଜଗତ୍‌ସିଂହପୁର, ସାକ୍ଷୀଗୋପାଳ ପ୍ରଭୃତି ସହର ଭଳି ବଡ଼ ବଡ଼ ଗ୍ରାମମାନଙ୍କରେ ଇଉନିୟନ ବୋର୍ଡ଼ ଅଛି । ଏହା ପଞ୍ଚାୟତବୋର୍ଡ଼ଠାରୁ ବଡ଼ । ଟିକସଦାତାମାନେ ଭୋଟ ଦେଇ ଏହି ବୋର୍ଡ଼ ପାଇଁ ସଭ୍ୟ ନିର୍ବାଚନ କରନ୍ତି । ସରକାର ମଧ୍ୟ କେତେଜଣ ମାନ୍ୟଗଣ୍ୟ ଲୋକଙ୍କୁ ସଭ୍ୟରୂପେ ମନୋନୀତ କରନ୍ତି । ସଭ୍ୟମାନେ ନିଜ ଭିତରୁ ଜଣକୁ ପ୍ରେସିଡ଼େଣ୍ଟ ନିଯୁକ୍ତ କରନ୍ତି । ରାସ୍ତାଘାଟ, ଡାକ୍ତରଖାନା ପ୍ରଭୃତିର ବ୍ୟବସ୍ଥା କରିବା ଇଉନିୟନ୍ ବୋର୍ଡ଼ର ପ୍ରଧାନ କାମ । ଏ ବାବଦରେ ଯାହା ଖର୍ଚ୍ଚ ହୁଏ ତାହା ଲୋକଙ୍କଠାରୁ ଟିକସ ଆକାରରେ ଆଦାୟ କରାଯାଏ । ଦରକାର ହେଲେ ସରକାର ମଧ୍ୟ ବୋର୍ଡ଼କୁ ସାହାଯ୍ୟ ଦିଅନ୍ତି ।

**ଲୋକାଲ୍ ବୋର୍ଡ଼**—ତୁମ୍ଭେମାନେ ପୂର୍ବରୁ ଜାଣିଛ ଯେ ଶାସନର ସୁବିଧାପାଇଁ ପ୍ରତି ଜିଲ୍ଲାକୁ କେତେଗୋଟି ସବ୍‌ଡ଼ିଭିଜନ୍‌ରେ ବିଭକ୍ତ କରାହୋଇଛି । କଟକ ଜିଲ୍ଲାରେ ତିନିଗୋଟି ସବ୍‌ଡ଼ିଭିଜନ୍ ଅଛି—ସଦର, ଯାଜପୁର ଓ କେନ୍ଦ୍ରାପଡ଼ା । ପ୍ରତି ସବ୍‌ଡ଼ିଭିଜନ୍‌ରେ ଗୋଟିଏ ଗୋଟିଏ ଲୋକାଲ୍ ବୋର୍ଡ଼ ଅଛି । ସେହିପରି ଅନ୍ୟାନ୍ୟ ଜିଲ୍ଲାର ସବ୍‌ଡ଼ିଭିଜନ୍‌ମାନଙ୍କରେ ଲୋକାଲ୍ ବୋର୍ଡ଼ମାନ ଅଛି । ଲୋକାଲ୍ ବୋର୍ଡ଼ର ସଭ୍ୟମାନେ ଲୋକମାନଙ୍କ ଭୋଟଦ୍ୱାରା ନିର୍ବାଚିତ ହୁଅନ୍ତି । ସରକାର ମଧ୍ୟ କେତେଜଣ ସଭ୍ୟଙ୍କୁ ମନୋନୀତ କରନ୍ତି । ବୋର୍ଡ଼ର ସଭ୍ୟମାନେ ଜଣେ ସଭାପତି ବା ଚେୟାରମ୍ୟାନ୍ (Chiarman) ଓ ତାଙ୍କ ତଳକୁ

ଜଣେ ଉପ-ସଭାପତି ବା (Vice-Chairman) ନିର୍ବାଚନ କରନ୍ତି । ଏହିପରି ଲୋକାଲ୍ ବୋର୍ଡ଼ ଗଠିତ ହୁଏ । ଲୋକାଲ୍ ବୋର୍ଡ଼ର କାମ ହେଉଛି—ରାସ୍ତାଘାଟ ତିଆରି କରିବା, ସ୍କୁଲ, ଡାକ୍ତରଖାନା ବସାଇବା, କୂଅ ପୋଖରୀ ଖୋଳାଇବା । ଏ ସବୁ କାମପାଇଁ ଯାହା ଖର୍ଚ୍ଚ ହୁଏ, ତାହା ଲୋକଙ୍କଠାରୁ କର ବା ଟିକସ ରୂପେ ଅସୁଲ କରାଯାଏ ।

**ଜିଲ୍ଲା ବୋର୍ଡ଼** (District Board)—ପ୍ରତି ଜିଲ୍ଲା ପାଇଁ ଗୋଟିଏ ଗୋଟିଏ ଜିଲ୍ଲାବୋର୍ଡ଼ ଅଛି । ସମ୍ବଲପୁର ଜିଲ୍ଲାରେ ଏହାକୁ ଜିଲ୍ଲା କାଉନ୍‌ସିଲ୍ (District Council) କହନ୍ତି । ଜିଲ୍ଲାବୋର୍ଡ଼ର ସଭ୍ୟସଂଖ୍ୟା ବେଶି । ଏମାନେ ଲୋକଙ୍କ ଭୋଟ ଦ୍ୱାରା ନିର୍ବାଚିତ ହୁଅନ୍ତି । କେତେ ଜଣ ସଭ୍ୟ ସରକାରଙ୍କଦ୍ୱାରା ମନୋନୀତ ହୁଅନ୍ତି । ସଭ୍ୟମାନେ ଜଣେ ସଭାପତି (Chairman) ଓ ଜଣେ ଉପ-ସଭାପତି (Vice-Chairman) ବାଛନ୍ତି । ଏବେ ସରକାରଙ୍କଦ୍ୱାରା ଜିଲ୍ଲାବୋର୍ଡ଼ର ପରିଚାଳକରୂପେ ଜଣେ ବିଶେଷ କର୍ମଚାରୀ (Special Officer) ନିଯୁକ୍ତ ହେଉଛନ୍ତି । ଜିଲ୍ଲାବୋର୍ଡ଼ର କ୍ଷମତା ଖୁବ୍ ବେଶି । ଜିଲ୍ଲାବୋର୍ଡ଼ର ଇଙ୍ଗିତରେ ଇଉନିୟନ ବୋର୍ଡ଼ ଓ ଲୋକାଲ୍ ବୋର୍ଡ଼ ପରିଚାଳିତ ହୁଅନ୍ତି । ଜିଲ୍ଲାବୋର୍ଡ଼ ଜିଲ୍ଲାଯାକର ସ୍ୱାସ୍ଥ୍ୟ, ରାସ୍ତାଘାଟ, ପ୍ରାଥମିକ ଶିକ୍ଷା ପ୍ରଭୃତିର ବ୍ୟବସ୍ଥା କରେ । ମଫସଲର ପ୍ରାଇମେରୀ ସ୍କୁଲ ଓ ଅନେକ ଡାକ୍ତରଖାନା ଜିଲ୍ଲାବୋର୍ଡ଼ଦ୍ୱାରା ପରିଚାଳିତ ହୁଏ । ମଫସଲରେ ଜଳର ସୁବିଧା ପାଇଁ କୂଅ ପୋଖରୀ ଖୋଳାଇବା, ଯିବା ଆସିବାର ସୁବିଧା ପାଇଁ ନଈ ନାଳ ଉପରେ ପୋଲ କରିବା, ନଈଘାଟରେ ନାଆ ଚଳାଚଳର ବ୍ୟବସ୍ଥା କରିବା, ହାଟ ଓ ମେଳା

ବସାଇବା—ଏସବୁ ମଧ୍ୟ ଜିଲ୍ଲାବୋର୍ଡ଼ର କାମ । ବର୍ତ୍ତମାନ ତୁମେ ଜାଣୁଛ ଯେ ଜିଲ୍ଲାବୋର୍ଡ଼ର କାମ କେତେ ବେଶି ଓ କେତେ ବ୍ୟାପକ । ଏସବୁ କାମ ତୁଲେଇବା ପାଇଁ ଜିଲ୍ଲାବୋର୍ଡ଼ ଟଙ୍କା ପଇସା ପାଏ କୁଆଡ଼ୁ ? ଜିଲ୍ଲାବୋର୍ଡ଼ର ଅନେକ



[ ମଫସଲ ହାଟ ]

ପ୍ରକାର ଆୟ ଅଛି । ନଦୀ, ଘାଟ, ପୋଲ ପ୍ରଭୃତି ବ୍ୟବହାର କରୁଥିବା ଲୋକେ ଶୁଳ୍କ ଦିଅନ୍ତି । ହାଟ, ମେଳା ପ୍ରଭୃତିରେ ବିକବା ଲୋକଙ୍କଠାରୁ କିଛି ପଇସା ଆଦାୟ ହୁଏ । ଖଜଣା ସହିତ ସରକାର ଯେଉଁ ପଥକର (Road Cess) ଆଦାୟ କରନ୍ତି, ତାକୁ ଜିଲ୍ଲାବୋର୍ଡ଼କୁ ଦିଅନ୍ତି । ଜିଲ୍ଲାବୋର୍ଡ଼ର ଖର୍ଚ୍ଚ ପାଇଁ ସରକାର ଅଧିକା ସାହାଯ୍ୟ ମଧ୍ୟ ଦିଅନ୍ତି ।

**ମ୍ୟୁନିସିପାଲିଟି**—ଆଗରୁ ଯେତେ ପ୍ରକାର ବୋର୍ଡ଼ କଥା କୁହାଗଲା ସେ ସବୁ ବୋର୍ଡ଼ର କାମ ମଫସଲ ଅଞ୍ଚଳ ପାଇଁ । ସହରର ତତ୍ତ୍ୱ ନେବାପାଇଁ ଆଉ ଗୋଟିଏ ପ୍ରକାର ଅନୁଷ୍ଠାନ ଅଛି । ତାହାକୁ ମ୍ୟୁନିସିପାଲିଟି କହନ୍ତି । ସବୁ ବଡ଼ ସହରରେ ଗୋଟିଏ ଗୋଟିଏ ମ୍ୟୁନିସିପାଲିଟି ଅଛି । ସହରର ଲୋକେ ଭୋଟ ଦେଇ ମ୍ୟୁନିସିପାଲିଟିକୁ ମେମ୍ବର ପଠାନ୍ତି । ମେମ୍ବରମାନଙ୍କୁ ମ୍ୟୁନିସିପାଲିଟିର କମିଶନର କହନ୍ତି । କମିଶନରମାନେ ତାଙ୍କ ଭିତରୁ ଜଣେ ସଭାପତି (Chairman) ଓ ଉପ-ସଭାପତି (Vice-Chairman) ନିର୍ବାଚନ କରନ୍ତି । ମ୍ୟୁନିସିପାଲିଟି ସଭା ଏହିପରି ଗଠିତ ହୁଏ । ଏହାଛଡ଼ା ମ୍ୟୁନିସିପାଲିଟିରେ ଜଣେ ଜଣେ ସରକାରୀ କାର୍ଯ୍ୟ-ନିର୍ବାହକ କର୍ମଚାରୀ (Executive Officer) ନିଯୁକ୍ତ ହୁଅନ୍ତି ।

ମ୍ୟୁନିସିପାଲିଟି ସହରର ସ୍ୱାସ୍ଥ୍ୟ ଓ ସହରବାସୀଙ୍କର ସବୁ ପ୍ରକାର ସୁବିଧା ପାଇଁ ବନ୍ଦୋବସ୍ତ କରନ୍ତି । ମ୍ୟୁନିସିପାଲିଟି ସହରର ଯେଉଁସବୁ କାମ କରନ୍ତି ତାହା ଭିତରୁ କେତେକ ପ୍ରଧାନ କାମର ବିବରଣୀ ତଳେ ଦିଆଗଲା:—

(୧) ସହରର ଲୋକେ କିପରି ଭଲ ପିଇବା ପାଣି ପାଇବେ ତାହାର ବନ୍ଦୋବସ୍ତ କରିବା ।

(୨) ସହରର ସଡ଼କ, ଗଳି, ରାସ୍ତା ମରାମତି କରିବା ଓ ସଫା ସୁତୁରା ରଖିବା ।

(୩) ଲୋକଙ୍କର ଓ ଯାନବାହନର ଯିବା ଆସିବାର ସୁବିଧା ପାଇଁ ରାସ୍ତାରେ ରାତିରେ ଆଲୁଅ ଦେବା ।

(୪) ସହରର ଶ୍ରେଷ୍ଠ ପିଲାଙ୍କ ସକାଶେ ପ୍ରାଥମିକ ଶିକ୍ଷାର ବ୍ୟବସ୍ଥା କରିବା ।

(୫) ବେମାର ଆରାମ ହେଲେ ସହରର ଲୋକେ କିପରି ସୁବିଧାରେ ଔଷଧ ପାଇବେ ତାହାର ବ୍ୟବସ୍ଥା କରିବା ।

(୬) କଲେରା, ବସନ୍ତ ପ୍ରଭୃତି ସଂକ୍ରାମକ ରୋଗ ବ୍ୟାପିଲେ ପ୍ରତିଷେଧକ ବ୍ୟବସ୍ଥା କରିବା ।

(୭) ନାଳ, ନର୍ଦ୍ଦମା, ପାଇଖାନା ଭଲରୂପେ ପରିଷ୍କାର କରିବାର ବନ୍ଦୋବସ୍ତ କରିବା ।

(୮) କିପରି ଘର ତିଆରି କଲେ, କେଉଁଠି ପାଇଖାନା ରହିଲେ, କିପରି ନର୍ଦ୍ଦମା କଲେ ଲୋକଙ୍କର ସ୍ୱାସ୍ଥ୍ୟହାନି ଘଟିବ ନାହିଁ, ସେଥିପାଇଁ ଆଇନ କରି ସେହି ଆଇନ ମୁତାବକ ଲୋକମାନଙ୍କୁ ଘର ତିଆରି କରିବାକୁ ଅନୁମତି ଦେବା ।

(୯) ସର୍ବସାଧାରଣଙ୍କ ପାଇଁ ସହରର ସ୍ଥାନେ ସ୍ଥାନେ ପାଇଖାନାର ବ୍ୟବସ୍ଥା କରିବା ।

(୧୦) ସହରରେ ଘୋଡ଼ାଗାଡ଼ି, ରିକ୍‌ସା ଓ ଅନ୍ୟାନ୍ୟ ଯାନବାହନର ଚଳପ୍ରଚଳ ପାଇଁ ସୁବନ୍ଦୋବସ୍ତ କରିବା ।

(୧୧) ସହରରେ ପଚାସଢ଼ା ମାଛ, ମାଂସ ବା ପନିପରିବା, ମିଶା ଘିଅ ବା ତେଲରେ ତିଆରି ଜଳଖିଆ ପ୍ରଭୃତି ବିକିବାକୁ ନ ଦେବା ।

(୧୨) ସହରବାସୀଙ୍କ ଭ୍ରମଣ ଓ ମୁକ୍ତବାୟୁ ସେବନର ସୁବିଧା ପାଇଁ ସହରର କେତେକ ସ୍ଥାନରେ ପାର୍କ (Park) ବା ପ୍ରମୋଦଉଦ୍ୟାନର ବ୍ୟବସ୍ଥା କରିବା ।

ମ୍ୟୁନସିପାଲଟିର କାମ ଯେପରି ବେଶି, ତାହା ତୁଳନାରେ ଆୟ ବି କିଛି କମ୍ ନୁହେଁ । ସହରବାସୀଙ୍କ ଉପରେ ଟିକସ ବସାଇବାର ଓ ଟିକସ ଆଦାୟ କରିବାର କ୍ଷମତା ପ୍ରତି ମ୍ୟୁନସି-



[ ବ୍ରହ୍ମପୁର ମ୍ୟୁନସିପାଲ ପାର୍କ ଓ ରେଡ଼ିଓ ଘର ]

ପାଲଟିର ଅଛି । ସବୁ ସହରରେ ଏକପ୍ରକାର ଟିକସ ଆଦାୟ ହୁଏ ନାହିଁ । ଯେଉଁ ସହରରେ ଯେପରି ସୁବିଧା, ସେହି ଅନୁସାରେ ଟିକସର ବ୍ୟବସ୍ଥା କରାଯାଏ । ସାଧାରଣତଃ ନିମ୍ନଲିଖିତ ଟିକସମାନ ସହରବାସୀଙ୍କ ଉପରେ ଧାର୍ଯ୍ୟ କରାଯାଏ—

(୧) ଘର ଟିକସ ।

(୨) ପାଇଖାନା ଟିକସ ।

(୩) ସହରରେ ଚାକିରି ବା ବ୍ୟବସାୟ କରୁଥିବା ଲୋକଙ୍କ ଆୟ ଉପରେ ଟିକସ ।

(୪) ସହରର ଯାନବାହନ ଉପରେ ଟିକସ ।

(୫) ସହର ସଡ଼କ ପାଖରେ ବା ହାଟରେ ଦୋକାନ ଦେଇଥିବା ଲୋକଙ୍କ ଉପରେ ଟିକସ ।

(୬) ସହରରେ ପାଣିକଳ ଥିଲେ ଜଳକର ।

(୭) ଶିକ୍ଷାଟିକସ ।

ଏହିସବୁ ଟିକସରୁ ମ୍ୟୁନିସିପାଲିଟିର ଖର୍ଚ୍ଚ ଚଳେ । ଅଭାବ ହେଲେ ସରକାର ମଧ୍ୟ ସାହାଯ୍ୟ ଦିଅନ୍ତି ।

କଲିକତା ପରି ବଡ଼ ବଡ଼ ସହରର ମ୍ୟୁନିସିପାଲିଟିକୁ କର୍ପୋରେସନ (Corporaton) କହନ୍ତି । କର୍ପୋରେସନ୍‌ର ଯେ ସଭାପତି, ତାଙ୍କୁ ମେୟର (Mayor) କହନ୍ତି ।

**ସ୍ୱାୟତ୍ତଶାସନ ଅନୁଷ୍ଠାନମାନଙ୍କର ଆୟ**—ଉପରୋକ୍ତ ବିଭିନ୍ନ ପ୍ରକାର ସ୍ୱାୟତ୍ତଶାସନ ଅନୁଷ୍ଠାନମାନଙ୍କର ଆୟ ବିଷୟରେ କୁହା ଯାଇଅଛି । ତୁମ୍ଭେମାନେ ଭଲରୂପେ ମନେ ରଖି ପାରିବ ବୋଲି ଏହି ଅନୁଷ୍ଠାନଗୁଡ଼ିକର ମୋଟାମୋଟି ଆୟର ପନ୍ଥା କ'ଣ ତାହା ପୁଣି ନିମ୍ନରେ ଦିଆଗଲା ।

(୧) ପାଞ୍ଚାୟତ ବୋର୍ଡ଼, ଇଉନିୟନ ବୋର୍ଡ, ଲୋକାଲ୍ ବୋର୍ଡ଼ ପ୍ରଭୃତି ସ୍ଥାନୀୟ ଅନୁଷ୍ଠାନମାଙ୍କର ପ୍ରଧାନ ଆୟର ପନ୍ଥା ଚୌକିଦାରୀ ଟିକସ ।

(୨) ଜିଲ୍ଲାବୋର୍ଡ଼ର ପ୍ରଧାନ ଆୟ ପଥକର ଓ ଘାଟ୍ଟାଘାଟ ମାସୁଲ ।

(୩)ମ୍ୟୁନିସିପାଲିଟିର ପ୍ରଧାନ ଆୟ ଘରଟିକସ, ପାଇଖାନା-ଟିକସ, ଚାକିରି କରୁଥିବା ଲୋକଙ୍କ ଦରମା ଉପରେ ଟିକସ, ଯାନବାହନ ଟିକସ ଓ ବୃତ୍ତିକର ।

(୪) ଅଭାବ ହେଲେ ସରକାରଙ୍କ ପାଣ୍ଠିରୁ ସାହାଯ୍ୟ ।

## ସ୍ୱାୟତ୍ତଶାସନ ଅନୁଷ୍ଠାନମାନଙ୍କର ଆୟ କି ଉଦ୍ଦେଶ୍ୟରେ ଖରଚ ହୁଏ—

ସବୁ ସ୍ୱାୟତ୍ତଶାସନ ଅନୁଷ୍ଠାନ ଲୋକହିତକର କାର୍ଯ୍ୟରେ ଟଙ୍କା ଖର୍ଚ୍ଚ କରନ୍ତି । ସବୁ ଅନୁଷ୍ଠାନର କାର୍ଯ୍ୟ ଓ ଉଦ୍ଦେଶ୍ୟ ପ୍ରାୟ ଏକ ପ୍ରକାର । କିନ୍ତୁ ସବୁ ଅନୁଷ୍ଠାନର ଇଲାକା ସମାନ ନୁହେ । ତେଣୁ କେଉଁ ଅନୁଷ୍ଠାନର କାମ ବେଶି, କେଉଁ ଅନୁଷ୍ଠାନର କାମ କମ୍ । ଇଉନିୟନ ବୋର୍ଡ଼ ଇଉନିୟନର କାମ କରେ, ଲୋକାଲ ବୋର୍ଡ ନିଜ ସବ୍ଡିଭିଜନ ଭିତରେ କାମ କରେ । ଜିଲା ବୋର୍ଡ଼ ସାରା ଜିଲାର କାମ ଓ ମ୍ୟୁନିସିପାଲିଟି ସହରର କାମ କରେ ।

ଏହି ସବୁ ଅନୁଷ୍ଠାନର ମୋଟାମୋଟି କାର୍ଯ୍ୟର ବିବରଣ ଏହିପରି:—

(୧) ରାସ୍ତାଘାଟ ତିଆରି ଓ ମରାମତି
(୨) ଶିକ୍ଷା ପାଇଁ ବ୍ୟବସ୍ଥା ।
(୩) ଚିକିତ୍ସାଦାନର ବ୍ୟବସ୍ଥା ।
(୪) ସଂକ୍ରାମକ ରୋଗ ନିବାରଣ ।
(୫) ପାଣି, ଆଲୁଅ ଯୋଗାଇବାର ବ୍ୟବସ୍ଥା ।

ସ୍ୱାୟତ୍ତଶାସନ ଅନୁଷ୍ଠାନମାନଙ୍କୁ ଆମେ ଯେଉଁ କର ବା ଟିକସ ଦେଉଁ ସେହି ଟଙ୍କାରେ ଏସବୁ କାମ ହୁଏ । ଆମ ଟଙ୍କା ଆମ ସକାଶେ ଖର୍ଚ୍ଚ ହୁଏ ଏଥିରେ ହାନି ଲାଭ କଥା କିଛି ନାହିଁ । ଆମର ସୁବିଧା ଓ ମଙ୍ଗଳ ପାଇଁ ସ୍ୱାୟତ୍ତଶାସନ ବିଭାଗ ରହିଅଛି ।

ଏ ବିଭାଗର କାମ ଅତି ମହତ୍ତ୍ୱ, ଅତି ଉଦାର । ସ୍ୱାୟତ୍ତଶାସନ ଅନୁଷ୍ଠାନଗୁଡ଼ିକର କାମ କିପରି ସୁରୁଖୁରୁରେ ଚାଲିବ, ତାହା ଦେଖିବା ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ । ଅନେକ ସମୟରେ କର୍ମକର୍ତ୍ତାମାନଙ୍କର ଅବହେଳାରୁ ଭଲ କାମ ହୋଇପାରେ ନାହିଁ । ବେଳେବେଳେ ଅସତ୍ ଉପାୟରେ ଟଙ୍କା ପଇସା ଖର୍ଚ୍ଚ



[ଜଣେ ଭୋଟଦାତା ଭୋଟ ଦେବାକୁ ଯାଉଛନ୍ତି]

ହୋଇଯାଏ । ଏସବୁ ଗଲ୍ତିର ପ୍ରତିକାର ଆମରି ହାତରେ ଅଛି । ଆମେ ଭୋଟ ଦେଇ ମ୍ୟୁନିସିପାଲିଟି ବା ବୋର୍ଡ଼କୁ ମେମ୍ବର ପଠାଉଛୁଁ । ଭୋଟ ଦେଲାବେଳେ ଭଲରୂପେ ଭାବି ଚିନ୍ତି ସାଧୁ ଓ ସଚ୍ଚା ପ୍ରକୃତିର ଲୋକ ବାଛି ପଠାଇବା ଦରକାର । ତା' ହେଲେ ସେମାନେ ଲୋକଙ୍କ ଉପକାର ହେବା ଭଳି କାମ କରି ପାରିବେ ।

ଭୋଟଦାତାମାନଙ୍କର କର୍ତ୍ତବ୍ୟଜ୍ଞାନ ଓ ଦାୟିତ୍ୱବୋଧ ଉପରେ ସ୍ୱାୟତ୍ତଶାସନ ଅନୁଷ୍ଠାନମାନଙ୍କର ଉଦ୍ଦେଶ୍ୟ ସାଧନ ନିର୍ଭର କରେ ।

ଆଜକାଲି ଆମ ଦେଶର ଶାସନ ଭାର ଆମରି ହାତରେ ଅଛି । ଦେଶଶାସନ ସହଜ କାମ ନୁହେଁ । ତା' ପାଇଁ ଉପଯୁକ୍ତ ଶିକ୍ଷାଦୀକ୍ଷା ଓ ସାଧନା ଦରକାର । ପହଁରି ଶିଖିବା ପାଇଁ ଆଗ ପାଣିରେ ପଶିବାକୁ ହୁଏ । ଦେଶଶାସନର ଜଟିଳ କାମ ଶିଖିବା ପାଇଁ ସ୍ୱାୟତ୍ତଶାସନର ସହଜ କାମଗୁଡ଼ିକ ଆଗ ଜାଣିବା ଦରକାର । ଗଛ ଚଢ଼ିବାକୁ ହେଲେ ମୂଳରୁ ଆଗକୁ ସମସ୍ତେ ଚଢ଼ନ୍ତି । ସ୍ୱାୟତ୍ତଶାସନ ହେଉଛି ଦେଶଶାସନର ମୂଳଦୁଆ । ମୂଳଦୁଆ ଯେତେ ଭଲ, ଯେତେ ମଜବୁତ୍ ହେବ, ତା' ଉପରେ ସେତେ ବଡ଼ ଅଟ୍ଟାଳିକା ଗଢ଼ିହେବ । ସ୍ୱାୟତ୍ତଶାସନର ମୂଲ୍ୟ କେତେ ବେଶି ବୁଝୁଛ ତ ?

## ପ୍ରଶ୍ନ

୧ । "ସ୍ୱାୟତ୍ତଶାସନ"ର ଅର୍ଥ କ'ଣ ?

୨ । ବିଭିନ୍ନ ପ୍ରକାର ସ୍ୱାୟତ୍ତଶାସନ ଅନୁଷ୍ଠାନମାନଙ୍କର ନାମ ଲେଖ ।

୩ । ତୁମେ ଯେଉଁ ସ୍ଥାନରେ ବାସ କର, ସେଠାରେ କି ପ୍ରକାର ସ୍ୱାୟତ୍ତଶାସନ ଅନୁଷ୍ଠାନ ଅଛି ? ଏହି ଅନୁଷ୍ଠାନର କାର୍ଯ୍ୟ କ'ଣ ?

୪ । ସହରରେ ମ୍ୟୁନିସିପାଲିଟି କି କି କାମ କରେ ? ଏହିସବୁ କାମ କରିବା ପାଇଁ ଟଙ୍କା କୁଆଡୁ ଆସେ ?

୫ । ଲୋକେ ଖଜଣା ସଙ୍ଗରେ ଯେଉଁ ପଥକର ଦଅନ୍ତି, ତାହାର କି ବ୍ୟବହାର ହୁଏ ?

୬ । ପଞ୍ଚାୟତ ଶାସନର ଉପକାରିତା କ'ଣ ?

୭ । ସ୍ୱାୟତ୍ତ ଶାସନ ବିଭାଗର ଆୟ ଓ ବ୍ୟୟର ସଂକ୍ଷିପ୍ତ ବିବରଣୀ ଲେଖ ।

୮ । ନାଗରିକମାନଙ୍କର ସ୍ୱାୟତ୍ତ ଶାସନ ଅନୁଷ୍ଠାନ ପ୍ରତି କର୍ତ୍ତବ୍ୟ କ'ଣ

---

## ସାଧାରଣ ପ୍ରଶ୍ନ

୧ । ତୁମ ଘର ପାଖରେ ଜଣେ ମଦୁଆର ଘର । ସେ ପ୍ରତିଦିନ ରାତିରେ ମଦ ଖାଇ ମାତାଲ ହୋଇ ଗାଳି ଗୁଜବ କରେ । ନାଗରିକ ହିସାବରେ ତୁମର କର୍ତ୍ତବ୍ୟ କ'ଣ ?

୨ । ତୁମେ କଟକ ଷ୍ଟେସନରେ ରେଲଗାଡ଼ିରୁ ଓହ୍ଲାଇବା ବେଳେ ଜଣେ ପକେଟମାରୁ ତୁମ କାମିଜ ପକେଟରୁ ରୁମାଲରେ ବନ୍ଧା ହୋଇଥିବା ଆଠଖଣ୍ଡ ଟଙ୍କାକିଆ ନୋଟ ଓ ରେଲଟିକଟ୍ ଖଣ୍ଡିକ ମାରି ନେଇଗଲା । ଏ ଅବସ୍ଥାରେ ତୁମେ କ'ଣ କରିବ ?

୩ । ତୁମ ସ୍କୁଲର କେତେକ ପିଲା ସ୍କୁଲରେ ଯେଉଁଠି ସେଇଠି ଛେପ, ଖଙ୍କାର, ସିଙ୍ଘାଣି ପକାନ୍ତି । ସେମାନଙ୍କର ଏ ଦୁରଭ୍ୟାସ ଦୂର କରିବା ପାଇଁ ତୁମ୍ଭେମାନେ କ'ଣ କରିବ ?

୪। ତୁମ ସ୍କୁଲ ପାଖରେ ଭଲ ବସ୍ତ୍ରଦୋକାନ ନାହିଁ । ତୁମ ସ୍କୁଲର ପିଲମାନେ ପ୍ରତିବର୍ଷ ବସ୍ତ୍ରପତ୍ର କିଣିବା ପାଇଁ ହଇରାଣ ହୁଅନ୍ତି । ଏହାର କି ପ୍ରତିକାର କରିପାରିବ ?

୫। ତୁମ ବାପା ତୁମ ନାଁରେ ଟ ୨୦୯ ମନିଅର୍ଡ଼ର କରି ପଠାଇ-ଛନ୍ତି । ଡାକବାଲା ମନିଅର୍ଡ଼ର ଫାରମ୍ ଓ ଟଙ୍କା ନେଇ ତୁମ ପାଖରେ ପହଞ୍ଚିଲା । ଫାରମ୍‌ର କେଉଁ କେଉଁ ସ୍ଥାନରେ ଦସ୍ତଖତ୍ କରି ତୁମେ ଟଙ୍କା ନେବ ? ଖଣ୍ଡେ ମନିଅର୍ଡ଼ର ଫାରମ୍ ଆଣି ସେହି ସ୍ଥାନରେ ଦସ୍ତଖତ୍ କର ଏବଂ ଫାରମ୍‌ର ଯେଉଁ ଅଂଶଟି ତୁମର ରଖିବାର କଥା, ସେହି ଅଂଶଟି ଚିରାଇ ରଖ ।

୬। ତୁମକୁ ଜଣେ ପଚାରିଲେ, "ତୁମ ଘର କେଉଁଠି ?" ତୁମେ ଉତ୍ତର ଦେଲ, "ମୁଁ ପୃଥିବୀର ଅଧିବାସୀ।" ଏ ଉତ୍ତର ପାଇ ତୁମେ ବିଦ୍ରୂପ କରୁଛ ଭାବି ପ୍ରଶ୍ନକର୍ତ୍ତା ଭାରି ରାଗିଗଲେ । ତୁମ ଉତ୍ତରର ତାତ୍ପର୍ଯ୍ୟ ତାଙ୍କୁ ଭଲରୂପେ ବୁଝାଇଦିଅ । ତା' ହେଲେ ସେ ଜାଣିବେ, ତୁମ ଉତ୍ତର ଯଥାର୍ଥ ଅଟେ ।

୭। ତୁମ ବାପାଙ୍କର ଦୁଇ ଏକର ଚାଷଜମି ଅଛି । ସେଥିରୁ ଯାହା ଧାନ ଆଦାୟ ହୁଏ ସେଇଥିରୁ ତୁମ ଘରର ସବୁ ଖର୍ଚ୍ଚ ଚଳେ । ବର୍ଷଶେଷକୁ ଦୁଇ ତିନି ମାସ ପାଇଁ ଖର୍ଚ୍ଚ ନିଅଣ୍ଟ ହୁଏ । ତୁମ ବାପାଙ୍କୁ ପ୍ରତିବର୍ଷ ଜମିଦାରଙ୍କ ଘରୁ ଧାନ କରଜ ଆଣି ଖର୍ଚ୍ଚ ତୁଲାଇବାକୁ ହୁଏ । ତୁମ ବାପାଙ୍କ ଅବସ୍ଥାର ଉନ୍ନତି ପାଇଁ ସମବାୟ ସମିତି କି ପ୍ରକାର ସାହାଯ୍ୟ କରିପାରେ, ଏ ବିଷୟରେ ତୁମ ବାପାଙ୍କୁ ଉପଯୁକ୍ତ ପରାମର୍ଶ ଦିଅ ।

୮ । ଯଦୁବାବୁଙ୍କ ଦୈନିକ ଆୟ ଟ ୫୯; ତାଙ୍କର ସବୁ ଖର୍ଚ୍ଚ ଯାଇ ମାସଶେଷକୁ ଟ ୨୦୯ ବଳିପଡ଼େ । ଏହି ବଳକା ଟଙ୍କାର କି ବ୍ୟବହାର କଲେ ଭଲ ହେବ ?

୯ । ସଡ଼କରେ ଗୋଟିଏ ସାନ ପିଲା ଖେଳୁଥିଲା । ହଠାତ୍ ଗୋଟିଏ ମୋଟରଗାଡ଼ି ଆସି ତା'ଉପରେ ମାଡ଼ିଗଲା । ପିଲାଟି ସେହିକ୍ଷଣି ମରିଗଲା । ଏ ଘଟଣାରେ ପୁଲିସଙ୍କ କର୍ତ୍ତବ୍ୟ କ'ଣ ? ତୁମ ମତରେ ଅପରାଧୀ କିଏ ? ପିଲାଟିର ବାପା ମା କି ନାଗରିକ ନୀତି ପାଳନ ନ କରିବାରୁ ଏ ଦୁର୍ଘଟଣା ଘଟିଲା ?

୧୦ । ତୁମ ଘରେ କି କୁଟୀରଶିଳ୍ପର ଆୟୋଜନ ଅଛି ? ନଥିଲେ କେଉଁ କୁଟୀରଶିଳ୍ପ ତୁମ ଘରେ ଚଳି ପାରିବ ? କାହିଁକି ?

୧୧ । ତୁମ ସ୍କୁଲର ତର୍କସଭାରେ ତୁମେ ଯନ୍ତ୍ରଶିଳ୍ପ ସପକ୍ଷରେ କହିବା ପାଇଁ ଇଚ୍ଛା କରିଛ । ତୁମ ମତ ସମର୍ଥନ କରିବା ପାଇଁ ପାଞ୍ଚଗୋଟି ଯୁକ୍ତି ଲେଖ ।

୧୨ । ସଂସ୍କୃତରେ ଗୋଟିଏ କଥା ଅଛି, ତାହାର ଅର୍ଥ—"ଯେତେ ଦିନ ଯାଏ ବଞ୍ଚିଛ, ସୁଖରେ ବଞ୍ଚି ରହ; ଦରକାର ହେଲେ ଋଣ କରି ଘିଅ ଖାଅ" । ଏଇ କଥା ଅନୁସାରେ ଚଳିଲେ ଆମର କି କ୍ଷତି ହେବ ?

୧୩ । ଖର୍ଚ୍ଚ କରିବା ସମ୍ପର୍କରେ ଆମେ ସବୁ ଲୋକଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରିବୁଁ—(୧) କୃପଣ, (୨) ମିତବ୍ୟୟୀ, (୩) ବହୁଖର୍ଚ୍ଚୀ ।

ଏ ତିନି ଶ୍ରେଣୀର ଲୋକଙ୍କ ଭିତରୁ କେଉଁ ଶ୍ରେଣୀର ଲୋକଙ୍କୁ ତୁମେ ଭଲ ପାଅ ? ତୁମେ ସେହି ଶ୍ରେଣୀରେ ସାମିଲ ହେବାକୁ ଚାହିଁ କି ନା ? କାରଣ ନ ଦେଲେ ତୁମ ଉତ୍ତର ଅକାରଣ ହୋଇଯିବ ।

୧୪ । ତୁମ ଗାଁର ପଞ୍ଚୁ ବଣ୍ୱାଳର ଘରଜମିକୁ ଲଗି ମୋହନ ନାୟକର କିଛି ଜମି ଅଛି । ଏ ଦୁଇ ଜମିର ସୀମା ସରହଦ ନେଇ ଦୁଇଜଣଙ୍କ ଭିତରେ କଳଗୋଳ ଲାଗିଲା । ଜଣେ ଅନ୍ୟ ଜଣଙ୍କର ଅମଙ୍ଗଳ ଚାହିଁଲା । ଦୁଇଜଣଙ୍କ ଭିତରେ ବିବାଦ ମେଣ୍ଟାଇବା ପାଇଁ କ'ଣ କଲେ ଭଲ ହେବ ?

୧୫ । କୃଷ୍ଣବାବୁଙ୍କ ଘର କଟକ ସହରରେ । ତାଙ୍କ ଉପରେ ମ୍ୟୁନିସିପାଲିଟି ବାର୍ଷିକ ଟିକସ ଧାର୍ଯ୍ୟ କରିଅଛନ୍ତି—

ଘର ଟିକସ ଟ ୨୪୲

ପାଇଖାନା ଟିକସ ଟ ୨୪୲

ମୋଟ ଟ ୪୮୲

ଏ ଟିକସ ପ୍ରତି ତିନି ମାସରେ ଟ ୧୨୲ ହିସାବରେ ଆଦାୟ କରାଯାଏ । କୃଷ୍ଣବାବୁ ଯେଉଁ ଟିକସ ଦିଅନ୍ତି, ତା ପାଇଁ କି ସୁବିଧା ପାଆନ୍ତି ?

୧୬ । ଯାଜପୁର ସବ୍‌ଡିଭିଜନର ବଞ୍ଚାରପୁର ଥାନାରେ ବରପଦା ନିମ୍ନପ୍ରାଥମିକ ସ୍କୁଲ । ସ୍କୁଲରେ ଦୁଇଜଣ ଶିକ୍ଷକ ପାଠ ପଢ଼ାନ୍ତି । ଏ ସ୍କୁଲ ଚଳାଇବାର ଭାର କାହା ଉପରେ ? ମାଷ୍ଟର ଦୁଇଜଣ ଦରମା ପାଆନ୍ତି କେଉଁଠାରୁ ?

୧୭ । ତୁମେ ପିଲାଦିନରୁ ଯେଉଁ ଯେଉଁ ସ୍କୁଲରେ ପାଠ ପଢ଼ିଛ, ସେ ସ୍କୁଲଗୁଡ଼ିକର ନାମ ଲେଖ । ପ୍ରତି ସ୍କୁଲ କାହାଦ୍ୱାରା ପରିଚାଳିତ—ବୋର୍ଡ, ମ୍ୟୁନିସିପାଲିଟି ନା ସରକାରଙ୍କଦ୍ୱାରା ?

୧୮ । "ସ୍ୱାର୍ଥ ହିଁ ସବୁ ଅନର୍ଥର କାରଣ"—ଏହି କଥାର ଅର୍ଥ ଗୋଟିଏ ଉଦାହରଣ ଦେଇ ଭଲରୂପେ ବୁଝାଇଦିଅ ।

୧୯ । ଆମ ଦେଶର ଅଧିକାଂଶ ଲୋକ ଦରିଦ୍ର ହୋଇ ରହିଛନ୍ତି କାହିଁକି ?

୨୦ । ତୁମ ସ୍କୁଲକୁ ଗୋଟିଏ ବଡ଼ ପରିବାର ମନେକରି ସେହି ପରିବାରର ଗୋଟିଏ ଦିନର କାର୍ଯ୍ୟକଳାପ ସଂକ୍ଷେପରେ ଲେଖ ।

୨୧ । ତୁମେ ସ୍ୱଦେଶକୁ ବିଦେଶ ଅପେକ୍ଷା ଅଧିକ ଭଲ ପାଅ କାହିଁକି ?

---

ବ୍ରହ୍ମପୁର ଶାରଦା ପ୍ରେସ୍‌ରେ ଶ୍ୟାମସୁନ୍ଦର ପାଢ଼ୀଙ୍କ ଦ୍ୱାରା
ମୁଦ୍ରିତ । ୧୯୫୯ ।